ପାର୍ଲେ

# ରାମ ଓ ଶ୍ୟାମ

## ଚମତ୍କାର ଉପସ୍ଥିତ ବୁଦ୍ଧି

ରାମ ଓ ଶ୍ୟାମ ପାଖ ବ୍ୟାଙ୍କକୁ ଗଲେ, ଜମା ଦେବା ପାଇଁ ସପ୍ତାହର ସଂଚିତ ଧନ, ବାଟ ସାରା ସୁସ୍ୱାଦୁ ପପିନ୍ସ ଖାଇଖାଇ ଚାଲିଲେ ।




ହଠାତ୍ ରାମ, ଶ୍ୟାମ ଦେଖିଲେ... ତୀରବେଗେ ବ୍ୟାଙ୍କ ପାଖରେ ଆସି ଅଟକିଗଲା ଏକ ସ୍କୁଟର, ଦୁଇଟି ଲୋକ ବ୍ୟାଙ୍କ ଭିତରକୁ ପଶିଯାଇ ଚଳାଇଲେ ଗୁଳି ବାରଂବାର ।







ଏ କ'ଣ ଦେଖୁଛନ୍ତି !




ରାମ ଓ ଶ୍ୟାମ ପାଦ ଟିପିଟିପି ପହଞ୍ଚିଗଲେ ଡକାଇତଙ୍କ ପଛରେ, ପପିନ୍‌ସ ପ୍ୟାକ୍‌କୁ ବନ୍ଧୁକ ନଳି ଭଳି ଦାବିଲେ ତାଙ୍କ ପିଠିରେ ।




ହଠାତ୍ ଅତର୍କିତ ଆକ୍ରମଣରେ ଡକାୟତ ଜଡ଼ସଡ଼ ହୋଇଗଲେ ଭୟରେ, ରାମ ଓ ଶ୍ୟାମ ଚଟପଟ ତାଙ୍କୁ ବାନ୍ଧିଦେଲେ ଦଉଡ଼ିରେ ।



ପାର୍ଲେ
ପପିନ୍ସ






## ବର୍ତ୍ତମାନ ଆପଣଙ୍କ ଶିଶୁର ତରକାରି ଶାକସବଜିର ସ୍ବାଦ



ପୂର୍ବରୁ ରନ୍ଧାଯାଇଥିବା

# ଫ୍ୟାରେକ୍ସ®-ଭେଜ୍




**୬ ମାସରୁ ଏହା ଦେବାକୁ ଆରମ୍ଭ କରନ୍ତୁ।**

ନୂଆ ଫ୍ୟାରେକ୍ସ-ଭେଜ ଶାକସବଜିର ପ୍ରାକୃତିକ ଗୁଣରେ ପରିପୂର୍ଣ୍ଣ । ଭିଟାମିନ-ସମୃଦ୍ଧ ଶାକସବଜି ଯଥା-ଗାଜର,ବିଲାତିବାଇଗଣ, ଆଉମଧ୍ୟ ମୁଗଡାଲି । ଏହା ପୂର୍ବରୁ ରନ୍ଧାଯାଇଛି ତେଣୁ ଛୋଟ ଛୋଟ ଶିଶୁମାନେ ମଧ୍ୟ ଏହାକୁ ସହଜରେ ହଜମ କରିପାରିବେ ।

**ଫ୍ୟାରେକ୍ସ-ବଢ଼ି ଉଠିବାର ଏକ ସ୍ବାଦଭରା ଉପାୟ।**

GX31/1633/OR

ଫ୍ୟାରେକ୍ସ ଶିଶୁ-ବିକାଶ ସଂଭାର ମଧ୍ୟରେ ଏବେ ମିଳୁଛି-୧.ପୁଷ୍ଟିକର ଫ୍ୟାରେକ୍ସ ସିରିଅଲ୍ ୨.ଫ୍ୟାରେକ୍ସ ଭେଜ ୩.ଫ୍ୟାରେକ୍ସ ଓଷ

ଏବେ! ଟଙ୍କା ସଂଚୟ-ରିଫିଲ୍ ପ୍ୟାକେଟ୍‌ରୁ ସେରେଲାକ୍‌ର ଲାଭ ଉଠାନ୍ତୁ।






# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗି ରେଡ୍ଡୀ

---

ଅନ୍ୟଙ୍କୁ ଆନନ୍ଦ ଆଣିଦେବା ପାଇଁ ଯାହାର ଆନ୍ତରିକ ଆଗ୍ରହ ଥାଏ, ବିଧାତା ତା' କଥା ବୁଝନ୍ତି । ଗଜୁ ମାତ୍ର ଗୋଟି ବର ମାଗିପାରିବ; ଆଉ ଗୋଟିଏ ଅଧିକା ବର ପାଇଁ ତା' ହୃଦୟରେ ବ୍ୟାକୁଳତା ଥିଲେ ବି ତାହା ସମ୍ଭବ ନୁହେଁ । କିନ୍ତୁ ସେ ବର ସ୍ୱାଭାବିକ ଭାବରେହିଁ ଆସିଗଲା !

## ଅମରବାଣୀ

ପରାଚଃ କାମାନନୁୟନ୍ତି ବାଲସ୍ତେ, ମୃତ୍ୟୋର୍ଜନ୍ତି ବିତ ତସ୍ୟ ପାଶଂ ।
ଅଥଧୀରା ଅମୃତତ୍ୱଂ ବିଦିତ୍ୱା ଧ୍ରୁବମଧ୍ରୁବେଷିହ ନ ପ୍ରାର୍ଥୟନ୍ତେ ॥

[ସାଧାରଣ ମଣିଷ ସାଧାରଣ ଓ ସାମାନ୍ୟ ସୁଖ ପଛରେ ଧାଇଁ ଧାଇଁ ଶେଷେ ମୃତ୍ୟୁ ବରଣ କରେ । ଯିଏ ଧୀର ଚିତ୍ତରେ କ'ଣ ସ୍ଥାୟୀ କ'ଣ ଅସ୍ଥାୟୀ, ସେସବୁ ବିଚାର କରିଥାଏ, ସିଏ ଅସାର ବସ୍ତୁ ପଛରେ ଯାଇ ଜୀବନ ବିତାଇଦିଏ ନାହିଁ ।]

---

ବର୍ଷ : ୨୨ ଡିସେମ୍ବର ୧୯୮୮ ଅଙ୍କ : ୬

ପ୍ରତି ସଂଖ୍ୟା : ଟ. ୩-୦୦ :: ବାର୍ଷିକ ମୂଲ୍ୟ : ଟ. ୩୬-୦୦

## ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



### ତୁଷାର-ମାନବର ପାଦଚିହ୍ନ ?

ହିମାଳୟ ପର୍ବତମାଳାର ଦୁର୍ଗମ ଅଞ୍ଚଳରେ ଅକୋମ୍ଭ ତୁଷାର-ମାନବ ଅଛନ୍ତି କି ? ନିକଟରେ ଇଂଲଣ୍ଡରୁ ଆସି ଦଳେ ବୈଜ୍ଞାନିକ ସେ ଦିଗରେ ଅନୁସନ୍ଧାନ କରୁଥିଲେ । ସେମାନେ କିଛି ଅସ୍ୱାଭାବିକ ଭାବରେ ବଡ଼ ପାଦଚିହ୍ନମାନ ଦେଖିଛନ୍ତି । ସେମାନଙ୍କର ଧାରଣା, କୌଣସି ଅଜ୍ଞାତ ଜୀବ ହୁଏତ ଅଛି ।



### ଅନବରତ ତବଲା !

ଆଲିଗଡ଼-ନିବାସୀ ଚନ୍ଦନ ଗୃଠାର୍ଜୀ ଏକାଦିକ୍ରମେ ୧୫ ଘଣ୍ଟା କାଳ ତବଲା ବଜାଇ ସେ ଦିଗରେ ନୂଆ ରେକର୍ଡ ସୃଷ୍ଟି କରିଛନ୍ତି ।



### ଅତି-ବୃଦ୍ଧା ସ୍ଫିଙ୍କ୍ସ୍

କାଇରୋ ସମୀପବର୍ତ୍ତୀ ମରୁଭୂମି ପ୍ରାନ୍ତରେ ବିଖ୍ୟାତ ସିଂହାସୁରୀ ବା ସ୍ଫିଙ୍କ୍ସ୍ (ଏହାର ମୁଖମଣ୍ଡଳ ନାରୀ ଭଳି, ଦେହ ସିଂହ ପରି) ଅନ୍ତତଃ ଚାରିହଜାର ପାଞ୍ଚଶହ ବର୍ଷ କାଳ ଦିଗବଳୟ ଆଡ଼େ ଅନାଇ ରହିବା ପରେ ଏବେ ବହୁତ କ୍ଳାନ୍ତ ହୋଇଗଲାଣି । ତା' ଦେହରେ ବହୁତ ଫାଟ ଦେଖାଦେଇଛି । ମରାମତି ପାଇଁ ବ୍ୟବସ୍ଥା ହେଉଛି ।



### ବିଶ୍ୱ ପରିକ୍ରମାକାରିଣୀ

ସିଡ୍‌ନେ ସହରର କୁମାରୀ କୋଟୀ ଜାକଣା ସମୁଦ୍ରରେ ୪୯ ଦିନ ଡଙ୍ଗାରେ ଅବ୍ୟାହତ ଭାବେ ପୃଥିବୀର ବହୁଳାଂଶ ବୁଲି ଆସିବାରେ ପ୍ରଥମ ନାରୀ ।

# ଅଭିନେତା ମନୋନୟନ

"ଶ୍ରୀଜଗନ୍ନାଥ ନାଟ୍ୟସଂଘ" ନାମରେ ଖ୍ୟାତ ଯାତ୍ରା ଦଳ ଆସି ଗୋଟିଏ ସହରରେ ତମ୍ବୁ ପକାଇଥାନ୍ତି । ସେମାନଙ୍କର ଜଣେ ଅଭିନେତା ଆବଶ୍ୟକ ବୋଲି ସେମାନେ ବିଜ୍ଞାପନ ଦେଲେ ।

ସହରର ଚାରିଜଣ ଯୁବକ ଆସି ନିର୍ଦ୍ଦେଶକ ଘନଶ୍ୟାମ ମହାପାତ୍ରଙ୍କ ସହ ଦେଖା କରିବା ନିମନ୍ତେ ଇଚ୍ଛା ପ୍ରକାଶ କଲେ । ସେମାନେ ସମସ୍ତେ ଅଭିନେତା ହେବାକୁ ଚାହୁଁଥିଲେ । "ଆପଣମାନେ ବସନ୍ତୁ; ବାବୁ ଅଧଘଣ୍ଟାଏ ଭିତରେ ଆସିଯିବେ ।" ନିର୍ଦ୍ଦେଶକଙ୍କ ସହକାରୀ ସେମାନଙ୍କୁ କହିଲା ।

କିନ୍ତୁ ପ୍ରାୟ ଦେଢ଼ ଘଣ୍ଟା ପରେ ଘନଶ୍ୟାମ ମହାପାତ୍ର ଆସିଲେ । ଆସି ପହଞ୍ଚି ଚାରି ଯୁବକଙ୍କ ଆଡ଼କୁ ଅନାଇ କହିଲେ, "କହୋ, ଏଇଟା କ'ଣ ଅନାଥାଶ୍ରମ ଯେ ଆଶ୍ରୟ ପାଇବାକୁ ଚାଲି ଆସିଲ ?"

ଏହା ଶୁଣି ତିନିଜଣ ଯୁବକ ମୁଣ୍ଡ ତଳକୁ କରି ବସି ରହିଲେ । କିନ୍ତୁ ଚତୁର୍ଥ ଜଣକ ଉଠି ପଡ଼ି ଚିତ୍କାର କରି କହିଲା, "ଆରେ ଆରେ ପଦ ମଦମତ୍ତ ! ମୋତେ ଦେଲୁ ଅପମାନ ? ତୋତେ କରିବାକୁ ହେବ ପ୍ରାୟଶ୍ଚିତ୍ତ !"

ନିର୍ଦ୍ଦେଶକ ହସିଦେଇ କହିଲେ, "ହେଲା ହେଲା । ଆମର କ୍ରୋଧୀ ଦୁର୍ବାସା ମୁନିଙ୍କ ଭୂମିକା ପାଇଁ ଜଣେ ଅଭିନେତା ଦରକାର ଥିଲା । ତମେହିଁ ସେ ପଦ ପାଇଁ ଉପଯୁକ୍ତ ।"





# ଚରଣର ଭାଗ୍ୟ

ଚରଣ ଦାସ ପିଲାବେଳଠୁଁ ବାପା ମାଙ୍କୁ ହରାଇଥାଏ । ତେଣୁ ତା' ଜେଜେ ବାପା ବଞ୍ଚିଥିଲେ ବୋଲି ତାକୁ ଯଥାସାଧ୍ୟ ଆଦର ଯତ୍ନ ସହକାରେ ବଡ଼ାଇଲେ । କିନ୍ତୁ ସେ ଯୁବକ ହେବା ବେଳକୁ ଜେଜେବାପାଙ୍କର ବି ପରଲୋକ ହୋଇଗଲା । ଅବଶ୍ୟ ସେତେବେଳକୁ ସେ କର୍ମଠ । ଆଜି ଜଣକ କ୍ଷେତରେ ତ କାଲି ଆଉ ଜଣକ କାମ କରି ସେ କୌଣସି ମତେ ଚଳି ଯାଉଥାଏ ।

ଗାଁରେ ଥାନ୍ତି ମଙ୍ଗଳଜୀ ନାମକ ଜଣେ ପହେଲ୍ ମାନ । ସେ ଚରଣକୁ ଭାରି ସ୍ନେହ କରୁଥାନ୍ତି । ଚରଣ ତାଙ୍କଠୁଁ ଲଠି ଖେଳ ଶିଖି ସେଥିରେ ଏମିତି ଓସ୍ତାଦ୍ ହୋଇଗଲା ଯେ ସେ ଯେତେବେଳେ ଲଠି ଖେଳୁଥାଏ, କେହି ତାକୁ ବା ଲଠିକୁ ଦେଖିପାରୁ ନଥାନ୍ତି । ସମସ୍ତେ ଖାଲି ଶବ୍ଦ ଶୁଣୁଥାନ୍ତି—ସତେ ଅବା ଗୋଟିଏ ଘୂର୍ଣ୍ଣିବାତ୍ୟା ଖେଳି ବୁଲୁଛି ।

କିନ୍ତୁ ସେ ଅଞ୍ଚଳରେ ଚରଣ ଦାସର ଏ ଅଦ୍ଭୁତ ବିଦ୍ୟାକୁ ତାରିଫ୍ କଲାଭଳି ଲୋକ କେହି ନଥିଲେ । କାହାରି ଘରକୁ କୁଣିଆ ଆସିଲେ ବା କିଛି ପର୍ବ ପର୍ବାଣି ହେଲେ ତାକୁ ଲୋକେ ଲଠି ଖେଳିବାକୁ କହନ୍ତି ଓ ମଜା ଦେଖନ୍ତି । କିନ୍ତୁ ତା'ପରେ ତାକୁ ସେପାଇଁ କିଛି ପୁରସ୍କାର ଦେବା କଥା କାହାରି ମୁଣ୍ଡକୁ ଆସେ ନାହିଁ ।

ସେତେବେଳେ ଚରଣ ଦାସର ଗାଁ ଓ ସହର ଭିତରେ ଗୋଟିଏ ବଣ ଥାଏ । ସେ ବଣରେ ଡାକୁଦଳ ରହୁଥାନ୍ତି ଓ ବଣ ପାଖଦେଇ ବା ଭିତର ଦେଇ ଯାଉଥିବା ଯାତ୍ରୀମାନଙ୍କ ପାଖରୁ ଟଙ୍କା ପଇସା ଓ ଅନ୍ୟାନ୍ୟ ମୂଲ୍ୟବାନ ଜିନିଷପତ୍ର ଛଡ଼ାଇ ନେଉଥାନ୍ତି ।

କାଶୀନାଥ



ଗାଁ ଜମିଦାରଙ୍କ ଝିଅ ବାହାଘର ହେଲା । ବାହାଘର ପରେ ଝିଅ ଶ୍ୱଶୁର ଘରକୁ ଯିବା ବେଳକୁ ଗୋଟାଏ ସମସ୍ୟା ଦେଖା ଦେଲା । ଯେଉଁ ମୁହୂର୍ତ୍ତରେ ବାପଘରୁ ବାହାରିଗଲେ ଶୁଭ ହେବ ବୋଲି ଗଣକ କହିଲେ, ସେ ମୁହୂର୍ତ୍ତରେ ବାହାରିଲେ ବଣ ପାଖରେ ପହଞ୍ଚିବା ବେଳକୁ ସନ୍ଧ୍ୟା ହୋଇଯିବ । ଡାକୁ ଭୟ ଥାଏ । କ'ଣ କରାଯିବ ? ଲୋକେ ଜମିଦାରଙ୍କୁ କହିଲେ, "ଆପଣ ଗୋଟାଏ କାମ କରନ୍ତୁ । ଝିଅ ସହିତ କିଛି ଲୋକ ଯିବେ, ସେମାନଙ୍କ ଛଡ଼ା ଆପଣ ଚରଣ ଦାସକୁ ପଠାନ୍ତୁ । ତା' ଲାଠି ଖେଳ ଆଗରେ କୌଣସି ଡାକୁ ତିଷ୍ଠି ପାରିବ ନାହିଁ ।"

ଜମିଦାର ଏ ପରାମର୍ଶ ଗ୍ରହଣ କରି ଚରଣ ଦାସକୁ କନ୍ୟା ସହ ପଠାଇଲେ । ଯାହା ଆଶଙ୍କା କରାଯାଉଥିଲା ତାହାହିଁ ହେଲା । ଅଳଙ୍କାର ଓ ଅନ୍ୟାନ୍ୟ ସମ୍ପଦ ଲୋଭରେ ଡାକୁଦଳ ସବାରୀକୁ ଘେରିଗଲେ । ସଙ୍ଗେ ସଙ୍ଗେ ଚରଣ ଦାସ ଲାଠି ଚଳାଇବାକୁ ଆରମ୍ଭ କଲା । ସେଭଳି ଲାଠି ଚାଳନା ଡାକୁମାନେ କେବେ ଦେଖି ନଥିଲେ । ସେମାନେ ଆହତ ହେଲେ ଓ ଛତ୍ରଭଙ୍ଗ ହେଲେ । କନ୍ୟା ନିରାପଦରେ ଶ୍ୱଶୁରାଳୟରେ ପହଞ୍ଚିଲା । ଚରଣ ଆଶା କଲା, ଏଡ଼େ ବଡ଼ ବିପଦରୁ କନ୍ୟାକୁ ରକ୍ଷା କରିଥିବା ଯୋଗୁଁ କନ୍ୟାର ଶ୍ୱଶୁର ତାକୁ ବହୁତ ପୁରସ୍କାର ଦେବେ । ତା' ଭାଗ୍ୟ ବଦଳି ଯିବ । କିନ୍ତୁ ସମସ୍ତେ ବାହାବା ଦେଲେ । କନ୍ୟାର ଶ୍ୱଶୁର ତା' ଲାଠି ଖେଳ ଦେଖାଇବାକୁ ମନ ବଳାଇଲେ ଓ ସେ ତାହା ବି ଦେଖାଇଲା । କିନ୍ତୁ ପୁରସ୍କାର କଥା କେହି କାହିଁ ଉଠାଇଲେ ନାହିଁ ।

ଚରଣ ଭାବିଲା, ଏଠି କିଛି ନ ମିଳିଲା ନାହିଁ, ଗାଁକୁ ଫେରିଗଲେ ଜମିଦାର ନିଶ୍ଚୟ ତାକୁ ବହୁତ ଟଙ୍କା ଦେବେ । ଯେତେହେଲେ ସେ ତାଙ୍କ ଝିଅର ସମ୍ମାନ ରକ୍ଷା କରିଛି ! କିନ୍ତୁ ଗାଁକୁ ଫେରିଯିବା ପରେ ଜମିଦାର ତା' ପିଠି ଥାପୁଡ଼େଇ ଦେଇ କହିଲେ, "ତୋ ଭଳି ପିଲାଟାଏ ପାଇ ଆମ ଗାଁ ଗୌରବାନ୍ୱିତ !" ବାସ୍ । ସେତିକି । ପୁରସ୍କାର ମିଳିଲା ନାହିଁ ।



ଚରଣ ଦାସ ବଡ଼ ବ୍ୟଥା ଅନୁଭବ କଲା । ତାକୁ ମୁଠିଏ ଭଲ କରି ଖାଇବାକୁ ନ ମିଳିଲେ ସେ ଲଠି ଚାଳନା ଅଭ୍ୟାସ ବଜାୟ ରଖିବ କିପରି ? ସେ ଗାଁ ଛାଡ଼ି ଚାଲିଯିବାକୁ ମନସ୍ଥ କଲା । ହୁଏତ ଅନ୍ୟ କୌଣସି ଗାଁରେ ତାକୁ ଜୀବିକା ନିର୍ବାହ ପାଇଁ ଭଲ ସୁଯୋଗ ମିଳିବ !

ସେ ବଣ ପାଖଦେଇ ଯାଉଛି, ଜଣେ ଲୋକ ଆସି ତାକୁ କହିଲା, "ଭାଇ, ସେଦିନ ତମ ହାତରେ ଲଠି ମାଡ଼ ଖାଇଥିବା ଡାକୁଙ୍କ ଭିତରୁ ମୁଁ ଜଣେ । ଶୁଣ । ତମକୁ ଯେପରି ବିଦ୍ୟା ଜଣା ଅଛି, ସେଥିରେ ତମେ ଆମ ସାଙ୍ଗରେ ରହିଲେ ଆମର ବି ଉପକାର ହେବ, ତମର ବି ଲାଭ ହେବ । ଆମେ ନଅଜଣ ଅଛୁଁ । ତମେ ମିଶିଲେ ଦଶଜଣ ହେବ । ଯାହା ଆମେ ପାଉଛୁଁ, ସେଥିରୁ ଏକ ଦଶମାଂଶ ତମକୁ ଦେବୁଁ । ତମେ ଦେଖିବ, ଆୟ ମନ୍ଦ ହେବ ନାହିଁ । ତା'ଛଡ଼ା ଭଲ ଖାଇବା ପିଇବା ପାଇଁ ଆମେ ବଣ ଭିତରେ ବ୍ୟବସ୍ଥା କରି ରଖିଛୁଁ । ଫଳତଃ, ଶୀଘ୍ର ସ୍ୱାସ୍ଥ୍ୟ ସବୁଦିନ ହୁଏ ।"

ଚରଣ ଦାସ ସେତେବେଳକୁ ହାଲିଆ ହୋଇଗଲାଣି । "ଆଚ୍ଛା, ଦେଖିବା" କହି ସେ ଡାକୁଟି ସହ ସେମାନଙ୍କ ଗୋପନ ନିବାସକୁ ଗଲା । ସେଠାରେ ତାକୁ ସେମାନେ ଭଲ ଖାଇବାକୁ ପିଇବାକୁ ଦେଇ ଅଭ୍ୟର୍ଥନା କଲେ । କିନ୍ତୁ ଏହା ପରେ ପରେ ଏପରି ଗୋଟିଏ ଘଟଣା ଘଟିଲା ଯେ ତା' ମନ ପିତା ହୋଇଗଲା । ଡାକୁମାନଙ୍କ ଭିତରୁ ଦୁଇଜଣ ବଣ ପାଖଦେଇ ଯାଉଥିବା ଜଣେ ପଥିକକୁ ଧରି ଆଣିଲେ । ତା' ପାଖରେ କିଛି ଟଙ୍କା ଥିଲା । ପଥିକଟି ଡାକୁମାନଙ୍କୁ ନେହୁରା ହୋଇ କହିଲା, "ଭାଇମାନେ, ମୋ ଝିଅ ବାହାଘର ଠିକ୍ ହୋଇ ଯାଇଛି । ମୋର ଜମି ବନ୍ଧକ ଦେଇ ବାହାଘର ଖର୍ଚ୍ଚ ତୁଲାଇବା ନିମନ୍ତେ ମୁଁ ଏତିକ ଟଙ୍କା ସଂଗ୍ରହ କରିଛି । ଯଦି ତମେମାନେ ଏତିକ ଛଡ଼ାଇ ନେବ, ତେବେ ଏଣେ ମୋ ଝିଅ ବାହାଘର ହୋଇ ପାରିବ ନାହିଁ । ତେଣେ ମୋ ଜମିତକ ମଧ୍ୟ ଯିବ । ମୋତେ ଦୟା କର ।"



ଚରଣ ଦାସର ହୃଦୟ ବିଚଳିତ ହେଲା । ସେ କହିଲା, "ତମେ ଯାଅ ।"

ଡାକୁମାନେ ଆଶ୍ଚର୍ଯ୍ୟ ହୋଇ ଚରଣ ଆଡ଼େ ଅନାଇଲେ, କିନ୍ତୁ ପଥିକ ଆଗରେ ତାକୁ କିଛି କହିଲେ ନାହିଁ । ପଥିକ ଚରଣ ଦାସକୁ ଧନ୍ୟବାଦ ଦେଇ ଚାଲିଗଲା । ସେ ଯିବା ପରେ ଡାକୁମାନେ ଚରଣକୁ କହିଲେ, "ବୁଦ୍ଧୁ ! ତମେ ଯେଉଁ ପଥିକଠାରୁ ଲୁଣ୍ଠନ କରିବାକୁ ଯିବ, ସେ ପଥିକ ତା'ର ଏହିଭଳି ସମସ୍ୟା ସବୁ କଥା କହିବ । ସେଥିରେ ତରଳିଗଲେ ଡାକୁଗିରି କରିପାରିବ ?"

"ନା, ବାସ୍ତବିକ୍ ମୁଁ ପାରିବି ନାହିଁ ।" ଏହା କହି ଚରଣ ଦାସ ସେମାନଙ୍କୁ ଛାଡ଼ି ଚାଲିଗଲା । ଡାକୁମାନେ ଆପତ୍ତି କଲେ ନାହିଁ । ସେ କିଛି ଦୂର ଯାଇଛି, ସେହି ପଥିକକୁ ଭେଟିଲା । ପଥିକ ତା' ପ୍ରତି ବହୁତ କୃତଜ୍ଞତା ପ୍ରକାଶ କଲେ ଓ କହିଲେ, "ତମେ ଭୁଲ୍‌ବଶତଃ ଡାକୁ ଦଳରେ ମିଶିଥିଲ । ତମର ଲୋଡ଼ା ସଚ୍ଚା ଉପାୟରେ ଜୀବିକା ନିର୍ବାହର ପନ୍ଥା । ମୋ ସହ ଚାଲ । ମୁଁ କିଛି ବ୍ୟବସ୍ଥା କରିଦେବି ।"

ଚରଣ ତାଙ୍କ ସହ ଚାଲିଲା । ଅଳ୍ପଦୂର ଯିବା ପରେ ସେମାନଙ୍କ ଆଖିରେ ଗୋଟାଏ ଅଦ୍ଭୁତ ଓ ଭୟଙ୍କର ଦୃଶ୍ୟ ପଡ଼ିଲା । ସେମାନେ ଦେଖିଲେ, ଗୋଟାଏ ରାକ୍ଷସ ଘୋଡ଼ା ଉପରୁ ଜଣେ ଲୋକକୁ ଉଠାଇ ନେଇ ଖାଇବାକୁ ଯାଉଛି । ପଥିକ ପ୍ରାଣ ବିକଳରେ ଦୌଡ଼ି ପଳାଇଲା । କିନ୍ତୁ ପଳାଇଯିବା ପୂର୍ବରୁ ସେ କହିଲା, "ଆରେ ବାପ୍ ! ରାକ୍ଷସ ଆମ ରାଜାଙ୍କୁ ଖାଇଯିବାକୁ ବସିଛି !"

ଚରଣ ଦାସ ସଙ୍ଗେ ସଙ୍ଗେ ରାକ୍ଷସ ଆଡ଼କୁ ଦୌଡ଼ିଯାଇ ପାଟି କଲା : "ସାବଧାନ ! ତମେ ଆଗେ ମୋ ସହ ଲଢ଼େଇ କର । ତା'ପରେ ତାଙ୍କୁ ଖାଇବ !"

ରାକ୍ଷସ ଏତେ ଆଶ୍ଚର୍ଯ୍ୟ ହୋଇଗଲା ଯେ ସେ ହାତ ତଳକୁ କରି ଅନ୍ୟମନସ୍କ ଭାବରେ ରାଜାଙ୍କୁ ଛାଡ଼ିଦେଲା ଓ କହିଲା, "ମୁଁ ଆଜି ଦଣ୍ଡକାରଣ୍ୟରୁ ଆସି ଏ ରାଜ୍ୟରେ ପହଞ୍ଚିଲି । ତେଣୁ ଏ ରାଜ୍ୟରେ ମୋ ସହ ମୁକାବିଲା

ତମଭଳି ସାହସୀ ମଣିଷ ଅଛନ୍ତି, ତାହା ମୁଁ ଜାଣି ନଥିଲି । ଦେଖ ଯୁବକ! ମୁଁ କ୍ରୂର ନିଷ୍ଠୁର ବା ନିର୍ମମ ନୁହେଁ । ପ୍ରତିଦିନ ମାତ୍ର ଗୋଟାଏ ମଣିଷ ମୁଁ ଆହାର କରିବି । ଅନ୍ୟ ବେଳେ ପଶୁ ପକ୍ଷୀ ଖାଇବି ।"

"ଯଦି ଗୋଟିଏ ମଣିଷ ଖାଇବ, ତେବେ ମୋତେ ଖାଅ । ଯାହାଙ୍କୁ ଧରିଛ, ସେ ଆମ ଦେଶର ରାଜା । ସେ ପ୍ରଜାବତ୍ସଳ ଓ ମହତ୍ । ତାଙ୍କୁ ଛାଡିଦିଅ ।" ଚରଣ ଦାସ କହିଲା ।

"ବେଶ୍ । ତମକୁହିଁ ଖାଇବି । ତେବେ ତମ ସାହସ ଓ ମହତ୍ତ୍ୱରେ ମୁଁ ମୁଗ୍ଧ । ତେଣୁ ମୃତ୍ୟୁ ପୂର୍ବରୁ ଯଦି ତମର କୌଣସି ଅଭିଳାଷ ଥାଏ, ତାହା ପ୍ରକାଶ କରିପାର । ମୁଁ ପୂରଣ କରିବି ।" ରାକ୍ଷସ କହିଲା ।

"ମୁଁ ଲଠି ଖେଳିବାକୁ ଖୁବ୍ ଭଲ ପାଉଥିଲି । ଯଦି ଅନୁମତି ଦେବ, ଥରେ ଲଠି ଖେଳିନେବି ।" ଚରଣ ଦାସ କହିଲା । ରାକ୍ଷସ ରାଜି ହେଲା । ଚରଣ ଦାସ ଲଠି ଖେଳିବାକୁ ଲାଗିଲା । ସେ ଖେଳ ଦେଖି ରାକ୍ଷସ ମୁଗ୍ଧ ହୋଇ କହିଲା, "ମୋତେ ଟିକିଏ ଲଠି ଖେଳ ଶିଖାଇ ଦିଅ ।" ଚରଣ ଦାସ ତାକୁ ଲଠି ଖେଳ ଶିଖାଇଲା । ରାକ୍ଷସ ଆନନ୍ଦରେ କହିଲା, "ବର୍ତ୍ତମାନ ତ ତମେ ମୋର ଗୁରୁ । ତମକୁ ଖାଇବାର ପ୍ରଶ୍ନ ଉଠୁନାହିଁ । ତମକୁ ଗୁରୁଦକ୍ଷିଣା ଦେବା ମୋର ଉଚିତ । କ'ଣ ପାଇଲେ ଖୁସି ହେବ, କୁହ ।"



"ତମେ ଆଜିଠାରୁ ମଣିଷ ଖାଇବ ନାହିଁ, ଏହି ପ୍ରତିଶ୍ରୁତି ଦେଲେ ଖୁସି ହେବି ।" ଚରଣ ଦାସ କହିଲା ।

ରାକ୍ଷସ ଗମ୍ଭୀର ଦେଖାଗଲା । ସେ କହିଲା, "ସେଭଳି ପ୍ରତିଶ୍ରୁତି ଦେବା ମୋ ପକ୍ଷରେ ଗୋଟାଏ ବଡ଼ ତ୍ୟାଗ ହେବ । ବରଂ ତା' ବଦଳରେ ତମକୁ ଅନ୍ୟ ଏକ ଦକ୍ଷିଣା ଦେଉଛି । ଆଗେ ତାହା କ'ଣ ଜାଣିସାର । ତା'ପରେ ଦେଖାଯିବ ।"

ଏହା କହି ରାକ୍ଷସ ଚରଣ ଦାସକୁ ଗୋଟାଏ ଗୁମ୍ଫା ଭିତରକୁ ନେଇଗଲା । ସେ ଗୁମ୍ଫା ଭିତରେ ଅଜସ୍ର ଧନରତ୍ନ । ରାକ୍ଷସ କହିଲା, "ମୋ ପିତାମହ ଏ ଐଶ୍ୱର୍ଯ୍ୟ ଏଠି ରଖି

ପାଇଥିଲେ । ତାହାର ସନ୍ଧାନ ନେବାପାଇଁ ମୁଁ ଏଠାକୁ ଆସିଥିଲି । ତମେ ଏସବୁ ନେଇଯାଅ । କିନ୍ତୁ ମୁଁ ମଣିଷ ନ ଖାଇବାର ସର୍ତ୍ତ ପ୍ରତ୍ୟାହାର କରନାଅ ।"

ଚରଣ ଦାସ ହସିଲା ଓ କହିଲା, "ରାକ୍ଷସ! ମଣିଷଙ୍କ ଜୀବନ ରକ୍ଷା କରିବାର ସୁଯୋଗ ମୋତେ ମିଳିଛି । ସାମାନ୍ୟ ଧନରତ୍ନ ଲୋଭରେ ମୁଁ ସେତେବଡ଼ ସୁଯୋଗ ଛାଡ଼ିଦେବି ବୋଲି ଭାବୁଛ ? ତାହା ସମ୍ଭବ ନୁହେଁ ।"

ରାକ୍ଷସ କହିଲା, "ସାବାସ୍ । କିନ୍ତୁ ମଣିଷ ମନ ବଡ଼ ଚଞ୍ଚଳ । ତମେ ଯଦି ଦିନେ ଏ ଧନରତ୍ନ ଲୋଭରେ ଏ ଗୁମ୍ଫାର ସନ୍ଧାନ ନେବାକୁ ଆସିବ, ତେବେ ମୋତେ ସ୍ମରଣ କରିବ । ମୋତେ ସ୍ମରଣ ନ କଲେ ଏ ଗୁମ୍ଫା ତମକୁ ଦେଖାଯିବ ନାହିଁ । ସେହିଦିନଠାରୁ କିନ୍ତୁ ମୁଁ ବି ମଣିଷ ଖାଇବା ଆରମ୍ଭ କରିବି ।"

"ସେଭଳି ପରିସ୍ଥିତି ସମ୍ଭବ ହେବ ନାହିଁ ।" ଚରଣ ଦାସ ଏହା କହି ରାକ୍ଷସଠୁଁ ବିଦାୟ ନେଲା ।

ରାଜା ଚରଣ ଦାସଙ୍କୁ ସିଧା ନିଜ ନଅରକୁ ନେଇଗଲେ ଓ ରାଣୀଙ୍କୁ କହିଲେ, "ଆମର ପୁଅ ନାହିଁ । ଗୋଟିଏ ବୋଲି ଝିଅ । ମୁଁ ଆଜି ଏକା ସାଥିରେ ପୁଅ ଓ ଜାମାତା ନେଇ ଆସିଛି ।" ତା'ପରେ ଚରଣଙ୍କୁ ଦେଖାଇ କହିଲେ, "ଇଏ ଆମ କନ୍ୟାକୁ ବିଭା ହେବେ ଏବଂ ଏ ରାଜ୍ୟର ଯୁବରାଜ ହେବେ ।"

ରାଣୀ ଆଶ୍ଚର୍ଯ୍ୟ ହୋଇଗଲେ ଓ ଚୁପି ଚୁପି କହିଲେ, "ଜଣେ ଏଭଳି ସାଧାରଣ ଯୁବକ..."

ରାଜା କହିଲେ, "ଇଏ ସାଧାରଣ ନୁହେଁ, ଅସାଧାରଣ । ଅସୀମ ସାହସୀ, ପୁଣି ମଣିଷଙ୍କୁ ରକ୍ଷା କରିବା ପାଇଁ ଇଏ ବିପୁଳ ଐଶ୍ୱର୍ଯ୍ୟ ତ୍ୟାଗ କରି ପାରନ୍ତି । ଏହାଙ୍କଠୁଁ ଅଧିକ ଭଲ ଭାବରେ ମୋ ପ୍ରଜାଙ୍କୁ ରକ୍ଷା କରିବେ କିଏ ?"

ରାଣୀ ତା'ପରେ ସବୁ ଶୁଣି ବିସ୍ମିତ ଓ ଆନନ୍ଦିତ ହେଲେ ।





# ପ୍ରତିଶ୍ରୁତି

ଜମିଦାର ନବୀନ ବସୁ ପ୍ରତିବର୍ଷ ଫୁଲେଶ୍ୱର ଗ୍ରାମରେ ହେଉଥିବା ରଥଯାତ୍ରା ଦେଖିବାକୁ ଯାଉଥାନ୍ତି । ତାଙ୍କ ସାଙ୍ଗରେ ତାଙ୍କ ଭୃତ୍ୟ ପୀତାମ୍ବର ଯାଉଥାଏ । ଜମିଦାର ସୁନ୍ଦର ଧୋତି ପଞ୍ଜାବି ପିନ୍ଧି ମନ୍ଦିର ଆଗରେ ପହଞ୍ଚିବା ମାତ୍ରେ ସେ ଗାଁର ମୁଖିଆ ତାଙ୍କ ପାଇଁ ଖଣ୍ଡିଏ ଚୌକି ଆଣି ପକାଇ ଦେଉଥାଏ । ସେ ବସି ଯାଇ ଲୋକଙ୍କୁ ନାନା ପରାମର୍ଶ ଓ ଉପଦେଶ ଶୁଣାନ୍ତି । ସଙ୍ଗେ ସଙ୍ଗେ କହନ୍ତି, "ବହୁ ଦୂରରୁ ଲୋକେ ଏଠାକୁ ଆସୁଛନ୍ତି । ଖରା ବର୍ଷାରେ ଆଶ୍ରା ନେବା ନିମନ୍ତେ ଏଠାରେ କିଛି ବ୍ୟବସ୍ଥା ନାହିଁ । ମୁଁ ଭାବୁଛି ଗୋଟାଏ ବଡ଼ ଧର୍ମଶାଳା ତିଆରି କରିଦେବି ।"

"ବାଃ, ବାଃ, ଆପଣଙ୍କ ଭଳି ପୁଣ୍ୟାତ୍ମା ଦାନୀ ନହେଲେ ଏ କାମ କିଏ କରିବ ?" ଲୋକେ କହନ୍ତି ! ଜମିଦାର ହସି ହୁଅନ୍ତି ।

ଏମିତି ଭାବରେ ପାଞ୍ଚବର୍ଷ ବିତିଗଲା । ପ୍ରତିବର୍ଷ ଜମିଦାର ଧର୍ମଶାଳା ତିଆରି କରିବା କଥା କହନ୍ତି ଓ ଲୋକେ ତାଙ୍କର ପ୍ରଶଂସା କରନ୍ତି ।

ତାଙ୍କ ସାଙ୍ଗରେ ଆସୁଥିବା ଭୃତ୍ୟ ପୀତାମ୍ବର ଇତିମଧ୍ୟରେ ବୁଢ଼ା ହୋଇ ଯାଇଥାଏ । ଦିନେ ସେ ମରିଗଲା । ତା'ପରେ ରଥଯାତ୍ରା ବେଳେ ଯେତେବେଳେ ନବୀନ ବସୁ ଆସି ଫୁଲେ-ଶ୍ୱରରେ ପହଞ୍ଚିଲେ, ସେତେବେଳେ ଜଣକ ପରେ ଜଣେ ଆସି ତାଙ୍କୁ କହିଲେ, "ଧନ୍ୟ ପୀତାମ୍ବର ! ସାଧାରଣ ଭୃତ୍ୟ, କିନ୍ତୁ କେଡ଼େ ବଡ଼ ହୃଦୟ !"

କେହି କେହି କହିଲେ, "ଜମିଦାର ବାବୁ ! ଆପଣ କେଡ଼େ ଭାଗ୍ୟବାନ ଯେ ପୀତାମ୍ବର ଭଳି ଭୃତ୍ୟଟିଏ ପାଇଥିଲେ ।" ସମସ୍ତେ ପୀତାମ୍ବରର ପ୍ରଶଂଶା ଏତେ

ବେଶି କଲେ ଯେ ଜମିଦାର ବୁଝିପାରିଲେ ନାହିଁ ଘଟଣା କ'ଣ । ଶେଷରୁ ଜଣକୁ ପଚାରିଲେ ପୀତାମ୍ବରର ପ୍ରଶଂସା ପଛରେ କି ରହସ୍ୟ ଅଛି ।

ଜମିଦାର ବୁଝିବା ବେଳକୁ କଥାଟି ଏହିପରି: ତା' ମୃତ୍ୟୁର ଦୁଇ ତିନିମାସ ପୂର୍ବରୁ ଦିନେ ପୀତାମ୍ବର ଆସି ମନ୍ଦିରର ମୁଖ୍ୟ ପୂଜକଙ୍କ ହାତରେ ଗୋଟିଏ ଟଙ୍କା ଥଳି ଦେଇ କହିଲା, "ଆଜ୍ଞା, ମୋର ଧାରଣା ମୁଁ ଆଉ ବେଶିଦିନ ବଞ୍ଚିବି ନାହିଁ । ମୋର ସଂସାରରେ କେହି ନାହିଁ । ଏତିକି ଟଙ୍କା ମୁଁ ରଖି ପାରିଛି । ଆପଣ ଏଥିରେ କୂଅଟିଏ ଖୋଳି ଦିଅନ୍ତୁ । ରଥଯାତ୍ରାବେଳେ ଭକ୍ତମାନେ ମୁନ୍ଦିଏ ମୁନ୍ଦିଏ ପାଣି ପିଇବେ ।"

ପୂଜକ କୂଅ ଖୋଳାଇଲେ ଏବଂ ଗାଁର ଯୁବକମାନେ ଯାତ୍ରାବେଳେ ସେଥିରୁ ପାଣି କାଢ଼ି ତୃଷାର୍ତ୍ତମାନଙ୍କୁ ଦେବାର ଦାୟିତ୍ୱ ନେଲେ ।

ଜମିଦାର ପୀତାମ୍ବରର ପ୍ରଶଂସା ଶୁଣୁଥିବା ବେଳେ ବାରମ୍ବାର କହିଲେ, "ମୁଁ ଶୀଘ୍ର ଧର୍ମଶାଳା ତିଆରି କରିବି ।"

କିନ୍ତୁ ଏଥର କେହି ଜଣେ ବି ସେକଥା ଶୁଣି ତାଙ୍କର ପ୍ରଶଂସା କଲେ ନାହିଁ । ସମସ୍ତେ ପୀତାମ୍ବର କଥା କହୁଥାନ୍ତି ।

ହଠାତ୍ ଜମିଦାର ବିରକ୍ତ ହୋଇ କହିଲେ, "ସାମାନ୍ୟ କୂଅଟାଏ ଖୋଳାଇବାରେ କି ବାହାଦୁରି ଅଛି ? ମୁଁ ପରା ଧର୍ମଶାଳା ବନାଇବି !"

ଜଣେ ବୁଢ଼ା ବାହାରି ଆସି କହିଲେ, "ଆଜ୍ଞା, ଆମ୍ବର ଚିତ୍ର ଦେଖି କାହାରି ପେଟ ପୂରେ ନାହିଁ । ତାହା ଖାଇବାକୁ ମିଳିଲେ ପେଟ ପୂରେ । ଆପଣ ଆମ ଆଗରେ ସେଭଳି ଚିତ୍ର ଆଙ୍କିବା ଛାଡି ଦିଅନ୍ତୁ ।"

ଜମିଦାର ଲଜ୍ଜା ପାଇଲେ । ଏହା ପରେ ପରେ ସେ ସତକୁ ସତ ଧର୍ମଶାଳା ବନାଇବାରେ ମନଦେଲେ ।





# କନକ ଉପତ୍ୟକାର କାହାଣୀ

[୧୨]

[ସୁବର୍ଣ୍ଣ ପ୍ରତିମାରେ କିପରି ଜୀବନ୍ୟାସ ହୋଇପାରେ, ସେହି ରହସ୍ୟର ସନ୍ଧାନରେ ଯାଇ ରାଜୁ ଏକ ପରେ ଏକ ବିଚିତ୍ର ରାଜ୍ୟ ଅତିକ୍ରମ କରି ଅବଶେଷରେ ଗୋଟିଏ ଅପୂର୍ବ ମୂଲକରେ ଉପନୀତ ହୋଇଛି । ସେ ତିନିଜଣଙ୍କ ପାଇଁ ତିନୋଟି ବର ଆଣି ଦେବା ପାଇଁ ପ୍ରତିଶ୍ରୁତ ।]

ନିର୍ଜନତା ଓ ନୀରବତା କେତେ ମଧୁର ହୋଇପାରେ, ସେକଥା ରାଜୁ ସେଇଠାରେ ଅନୁଭବ କଲା । କ୍ରମେ ସୂର୍ଯ୍ୟାଲୋକ ଚତୁର୍ଦ୍ଦିଗ ବ୍ୟାପି ବିଛେଇ ହୋଇ ପଡ଼ିଲା । କିନ୍ତୁ ସେ ସୂର୍ଯ୍ୟାଲୋକର ରଙ୍ଗ ସୁନେଲି । ସୂର୍ଯ୍ୟ ନିଜେ ଦିଶୁଥିଲେ କୌଣସି ଯଜ୍ଞରୁ ଉଦ୍‌ଗତ ସୁନାର ଅଗ୍ନିଶିଖା ଭଳି ।

"ଏଭଳି ସୂର୍ଯ୍ୟୋଦୟ ମୁଁ ଜୀବନରେ ଦେଖି ନଥିଲି । କେଉଁ ରାଜ୍ୟରେ ମୁଁ ପହଞ୍ଚିଛି !" ଆନନ୍ଦ ଓ ବିସ୍ମୟରେ ରାଜୁ କହିଲା ।

"ତମେ ଯେଉଁ ସ୍ଥୂଳ ପୃଥିବୀକୁ ଖୁବ୍ ଭଲ ଭାବରେ ଜାଣିଛ, ଏହା ତାହାକୁ ଲାଗି ଅଦୃଶ୍ୟ ଭାବରେ ରହିଛି, କିନ୍ତୁ ଏହା ତାହାର ଅଂଶ ବିଶେଷ ନୁହେଁ ।" ପୁରୋହିତ ତାକୁ କହିଲେ । "ତମେ ଯେଉଁ ସୂର୍ଯ୍ୟଙ୍କୁ ଦେଖୁଛ, ସିଏ ଆଲୋକର ଉତ୍ସ ମାତ୍ର ନୁହନ୍ତି, ଯିଏ ନିଜକୁ ତାଙ୍କ ପ୍ରତି ଉନ୍ମୁକ୍ତ ରଖିପାରିବ, ତା' ପାଇଁ ସେ ହେବେ ଜ୍ଞାନର ଉତ୍ସ ମଧ୍ୟ ।"

ରାଜୁ ତା' ଅଭିଯାନର ଆରମ୍ଭରେ ଜ୍ଞାନ-ବିଜ୍ଞାନ ରାଜ୍ୟରେ ଯେଉଁ ଅମାନୁଷିକ ପୁରୋହିତ

ମନୋଜ ଦାସ



ହାତରେ ପଡ଼ିଥିଲା, ତା' କଥା ମନେ ପଡ଼ିବାରୁ ଏଠାକାର ପୁରୋହିତଙ୍କୁ ପୁରୋହିତ ବୋଲି ନ ଡାକି ଯୋଗୀ ବୋଲି ସମ୍ବୋଧନ କରୁଥିଲା ।

ଯୋଗୀ ତାକୁ ଗୋଟିଏ ମନ୍ଦିର ଭିତରକୁ ନେଇଗଲେ । ଭିତରେ ଅପରୂପ ଦେବୀ ମୂର୍ତ୍ତି ।

ଅଧୀର ହୋଇ ରାଜୁ କହି ପକାଇଲା, "ଅବଶେଷରେ ତେବେ ତୁମ ଦର୍ଶନ ପାଇଲି, ମା!" କୃତଜ୍ଞତାରେ ତା' ହୃଦୟ ଭରିଗଲା । ସେ ଭୂମିଷ୍ଠ ପ୍ରଣାମ କଲା । ସେ ମୁଣ୍ଡ ଉଠାଇବା ବେଳକୁ ଦେବୀଙ୍କ ପାଦଦେଶରେ ଏକ ଗୁଚ୍ଛ ଫୁଲ । ସେ ମୁଣ୍ଡ ଅବନତ କଲାବେଳେ କିନ୍ତୁ ସେ ଗୁଚ୍ଛ ସେଠାରେ ନଥିଲା ।

"ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ, ତରୁଣ! ତମ ଭକ୍ତି ଓ ପ୍ରାର୍ଥନାହିଁ ଫୁଲଗୁଚ୍ଛର ରୂପ ନେଇଛି । ଫୁଲ ଫୁଟେ କିପରି ? ସୌନ୍ଦର୍ଯ୍ୟ, ସାମଞ୍ଜସ୍ୟ ଓ ପବିତ୍ରତା ପାଇଁ ପ୍ରକୃତିର ପ୍ରାର୍ଥନା ଭିତରୁହିଁ ଫୁଲର ସୃଷ୍ଟି ହୁଏ । ତୁମ ଜଗତରେ ମଣିଷକୁ ଫୁଲ ଦିଆଯାଏ— ତା'ହେଲେ ମଣିଷ ସେମିତି ପ୍ରାର୍ଥନା କରିବାକୁ ଶିଖିବ । ଏ ଜଗତର ଯିଏ ଯେତେବେଳେ କୌଣସି ମଧୁର ଭାବ ନେଇ ପ୍ରାର୍ଥନା କରେ, ତା'ର ସେ ପ୍ରାର୍ଥନା ଫୁଲରେ ପରିଣତ ହୁଏ ।" ଯୋଗୀ ବୁଝାଇ ଦେଲେ ।

ରାଜୁ ସେ ଫୁଲଗୁଚ୍ଛ ଆଡ଼େ ଆଶ୍ଚର୍ଯ୍ୟ ହୋଇ ଅନାଇଥାଏ । ସେ ଫୁଲ ତା' ନିଜ ଦେଶର ଫୁଲଠୁଁ ଆହୁରି ବହୁତ ସୁନ୍ଦର । ସେସବୁର ମହକ ମଣିଷ ହୃଦୟରେ ନାନାଦି ମହତ୍ ଭାବର ସ୍ଫୁରଣ କରିବାକୁ ସକ୍ଷମ ।

"ତରୁଣ! ଯଥାଶୀଘ୍ର ତମର ବର ତିନୋଟି ମାଗିନିଅ ।"

ସେଠାରେ ସେ ଅଧିକ ସମୟ ରହିପାରିବ ନାହିଁ, ଏହା ଜାଣି ରାଜୁ ବିମର୍ଷ ବୋଧ କଲା । କିନ୍ତୁ ପରେ ପରେ ତା' ମୁଣ୍ଡରେ ଉଦ୍‌ଭାସିତ ହେଲା ସୁବର୍ଣ୍ଣ ପ୍ରତିମା, ଜୀବନରେ ହସି ଜାଣି ନଥିବା ରାଜକୁମାରଙ୍କ ତଥା ଗୀତ କ'ଣ ଜାଣି ନଥିବା ରାଜକନ୍ୟାଙ୍କ ମୁହଁ । ସେ ଶୀଘ୍ର ପ୍ରତ୍ୟାବର୍ତ୍ତନ ପାଇଁ ମନେ ମନେ ପ୍ରସ୍ତୁତ ହୋଇଗଲା ।

"ହେ ଦେବୀ ! କନକ ଉପତ୍ୟକାର ସୁନା ପ୍ରତିମା ଜୀବନ୍ୟାସ ପାଉ, ମୋତେ ଏ ବର ଦିଅ !" ସେ ହାତଯୋଡ଼ି କରି କହିଲା ।

ଦେବୀଙ୍କ ପାଦଯୁଗଳ ପାଖରୁ ପଦ୍ମ ଭଳି ଦିଶୁଥିବା ଫୁଲଟିଏ ଖସି ପଡ଼ିଲା ।

"ତମ ପ୍ରାର୍ଥନା ପୂର୍ଣ୍ଣ ହେବ । ତମେ ପିନ୍ଧିଥିବା ମୁଦିଟି ଯେତେବେଳେ ତମେ ପ୍ରତିମା ଆଙ୍ଗୁଳିରେ ପିନ୍ଧାଇଦେବ, ସେତେବେଳେ ସେ ଜୀବନ୍ତ ହେବ ।" ଯୋଗୀ କହିଲେ ।

ରାଜୁ ଦେବୀଙ୍କୁ ପ୍ରଣାମ କଲା । ସେତେବେଳେ ତା' ହୃଦୟ ଭିତରୁ କଣ୍ଠ ଆଡ଼କୁ ଠେଲି ହୋଇ ଆସୁଥିଲା ଆଉ ଏକ ନିବେଦନ—ସେ ଯେମିତି ସେ ଜୀବନପ୍ରାପ୍ତ କନ୍ୟାକୁ ବିଭା ହେବ—ସେହି ବର ପାଇଁ ପ୍ରାର୍ଥନା । କିନ୍ତୁ ସେ ଲୋଭ ସମ୍ବରଣ କଲା । ତା'ର ପ୍ରାପ୍ୟ ତିନୋଟି ବରରୁ ଗୋଟିଏ ଗଲା; ବାକି ଦୁଇଟି ପାଇଁ ସେ ଅନ୍ୟମାନଙ୍କୁ ଭିନ୍ନ ଭିନ୍ନ ପ୍ରତିଶ୍ରୁତି ଦେଇ ଆସିଛି ।

"ହେ ଦେବୀ ! ଜ୍ଞାନ-ବିଜ୍ଞାନ ରାଜ୍ୟର ଲୋକେ ହସି ଶିଖନ୍ତୁ !" ସେ କହିଲା । ଦେବୀଙ୍କ ପାଦଦେଶରୁ ଆଉ ଏକ ପଦ୍ମ ଖସି ପଡ଼ିଲା । "ତମ ପ୍ରାର୍ଥନା ପୂର୍ଣ୍ଣ ହେବ," କହିଲେ ପୁରୋହିତ । ରାଜୁ ପୁନର୍ବାର ପ୍ରଣାମ କଲା । ପୁଣି ଥରେ ତା'ର ଉଦ୍‌ଗତ ଆଗ୍ରହକୁ ଦମନ କରି ସେ କହିଲା, "ହେ ଦେବୀ ! ଚିରସନ୍ତୁଷ୍ଟ ରାଜ୍ୟର ଲୋକେ ଯେପରି ଗୀତ ଗାଇ ପାରିବେ ।" ଦେବୀଙ୍କ ପାଦ ଦେଶରୁ ଖସି ଆସିଲା ତୃତୀୟ ପଦ୍ମ । କିନ୍ତୁ ତଳେ ନ ପଡ଼ି ତାହା ଝୁଲି ରହିଲା ।

"ତରୁଣ ! ସେ ରାଜ୍ୟର ଲୋକଙ୍କର ଗୀତ





ଗାଇବାର ଆବଶ୍ୟକତା ନାହିଁ । ତମେ ଭେଟିଥିବା ରାଜକନ୍ୟାଙ୍କ ଛଡ଼ା ସେ ପାଇଁ ଆଉ କାହାର କୌଣସି ଆଗ୍ରହ ନାହିଁ । ତେଣୁ କେବଳ ସେ ଗୀତ ଗାଇ ପାରିବେ ।" ପତ୍ନୀର ସେ ଆଚରଣର ଅର୍ଥ ଯୋଗୀ ବୁଝାଇ ଦେଲେ ।

ରାଜୁ ଦେବୀଙ୍କୁ ପ୍ରଣାମ କଲା ଓ ଦୀର୍ଘନିଃଶ୍ୱାସ ଛାଡ଼ି ନିଜକୁ ନିଜେ ମନେ ପକାଇ ଦେଲା ଯେ ଏହାପରେ ଆଉ କୌଣସି ବର ପାଇବାର ସମ୍ଭାବନା ନାହିଁ ।

ସେ ଶୁଣିଲା ଗୋଟାଏ ଅଶ୍ରୁତପୂର୍ବ ଶବ୍ଦ । ସେ ଆଖି ଖୋଲିଲା, କିନ୍ତୁ କିଛି ଦେଖିପାରିଲା ନାହିଁ । ମନେ ହେଲା, ଯେପରି ଏକ ଏକ ଆଖି ପଲକରେ ଦେଶ ଦେଶାନ୍ତର ତା' ପାଖଦେଇ ଅନ୍ତର୍ଦ୍ଧାନ ହୋଇ ଯାଉଛନ୍ତି । ଯେତେବେଳେ ସେ ତା'ର ସ୍ୱାଭାବିକ ଚେତନାକୁ ଫେରି ଆସିଲା, ସେତେବେଳେ ଦେଖିଲା ସେ ଆସି ଠିଆ ହୋଇଛି ଚିରସନ୍ତୁଷ୍ଟ ରାଜ୍ୟର ସୀମାନ୍ତରେ ଅବସ୍ଥିତ ନକ୍ଷତ୍ରଫଳ ଫଳୁଥିବା ଗଛତଳେ । ଅଦୂରରେ ହସ ହସ ମୁହଁରେ ଉଭା ରାଜକନ୍ୟା ।

ରାଜୁ ଉଲ୍ଲସିତ ଭାବରେ କହିଲା, "ରାଜକନ୍ୟା ! ମୁଁ ତୁମ କଣ୍ଠରେ ଗୀତ ଫୁଟାଇବାର ବର ଆଣି ଆସିଛି !"

"ମୁଁ ଜାଣେ । ତମ ଅଭିଯାନ ସଫଳ ହୋଇ ନଥିଲେ ତମେ ପ୍ରତ୍ୟାବର୍ତ୍ତନ କରି ପାରି ନଥାନ୍ତ ।" ରାଜକନ୍ୟା କହିଲେ ।

ତା' ଅଭିଯାନ କ'ଣ ସତରେ ସଫଳ ହୋଇଛି ? ରାଜୁ ସେ ବିଷୟରେ ନିଶ୍ଚିତ ନଥିଲା । ଚତୁର୍ଥ ବରଟିଏ ମାଗିବାର ବ୍ୟର୍ଥତା ଜନିତ ଦୁଃଖ ସେ ପାଶୋରି ଦେବାକୁ ଚାହୁଁଥିଲା । ଚିର-ସନ୍ତୁଷ୍ଟ ରାଜ୍ୟରେ ସେ ଦିଗରେ ତା'ର ଉଦ୍ୟମ ବଳେ ବଳେ ସଫଳ ହେଲା ।

"ତମେ ଗୀତ ଗାଅ !" ରାଜୁ କହିଲା ।

"ନିଶ୍ଚୟ, ନିଶ୍ଚୟ । କିନ୍ତୁ ତୁମେ ଶିଖାଇ ଦେଲେ ସିନା !" ରାଜକନ୍ୟା କହିଲେ ।

ରାଜୁ ଗାଇବାକୁ ଆରମ୍ଭ କଲା । ରାଜକନ୍ୟା ତାକୁ ଅନୁସରଣ କଲେ । ପ୍ରଥମ ମୁହୂର୍ତ୍ତର ଦ୍ୱିଧା ପରେ ପରେ ସେ ଯଥାଶକ୍ତି ଗାଇବାକୁ ଲାଗିଲେ ।

ରାଜୁ ମୁଗ୍ଧ ହୋଇ ଅନାଇଥାଏ । କିନ୍ତୁ ଘଟିଲା ଗୋଟିଏ ଅପ୍ରତ୍ୟାଶିତ ଘଟଣା ।

ରାଜକନ୍ୟା ଗୀତ ଗାଇଁ ଗାଇଁ ତାଠୁଁ ଦୂରେଇ ଦୂରେଇ ଚାଲିଗଲେ । ରାଜୁର ମନେ ହେଲା ସେ ଯେମିତି ଅଦୃଶ୍ୟ ହୋଇ ଆସୁଛନ୍ତି । ସେ ତାଙ୍କ ଆଡ଼େ ଦୌଡ଼ିଲା । କିନ୍ତୁ ବୃଥାରେ । ରାଜକନ୍ୟା ଅଦୃଶ୍ୟ ହୋଇଗଲେ । ବାତାବରଣରେ ରହିଗଲା ଖାଲି ତାଙ୍କ ସଙ୍ଗୀତର ମୂର୍ଚ୍ଛନା ।

ରାଜୁ ହତବମ୍ବ ହୋଇ ଏଣେ ତେଣେ ଦୌଡ଼ି ରାଜକନ୍ୟାଙ୍କୁ ଡାକିଲା । କିନ୍ତୁ ଫଳ କିଛି ହେଲା ନାହିଁ । ସେ ଅବସନ୍ନ ହୋଇ ତଳେ ପଡ଼ିଗଲା ।

"ରାଜକନ୍ୟା ଯେ ସ୍ଥୂଳ ଜଗତର ମଣିଷ ନୁହେଁ, ଏକଥା ଭୁଲିଗଲ କି ? ତାଙ୍କ ରାଜ୍ୟରେ ସମସ୍ତେ ଯିଏ ଯାହା ସେତିକରେ ସେ ସନ୍ତୁଷ୍ଟ ହୋଇ ରହିଥାଏ । ଏକମାତ୍ର ରାଜକନ୍ୟା ଥିଲେ ଭିନ୍ନ । ଗୀତଗାଇ ପାରିବା ନିମନ୍ତେ ତାଙ୍କର ଯେଉଁ ଇଚ୍ଛା, ତାହା ନିଜର ସୀମାବଦ୍ଧ ଶକ୍ତିକୁ ଟପିଯିବା ଦିଗରେ ତାଙ୍କ ଅଭିପ୍ସାର ପ୍ରମାଣ । ସେଭଳି ଅଭିପ୍ସା ମଣିଷମାନଙ୍କ ଲକ୍ଷଣ । ତାଙ୍କ ରାଜ୍ୟରେ କେବଳ ରାଜକନ୍ୟାଙ୍କ ଛଡ଼ା ଆଉ କାହାରି ପାଖରେ ସେଭଳି ଲକ୍ଷଣ ଦେଖାଯାଇ ନାହିଁ । ସେ ଏ ରାଜ୍ୟରୁ ଉଭେଇ ଗଲେ । କିଏ କହିବ, ହୁଏତ ସେ ମଣିଷ ରୂପ ନେବେ ।"

ରାଜୁ ଆଖି ଖୋଲିଲା । ଦେଖିଲା, ପାଖରେ ବସିଛନ୍ତି ତପସ୍ୱୀ । "ମୁଁ ବର୍ତ୍ତମାନ କେଉଁଠି ?" ରାଜୁ ବିସ୍ମୟ ଭରେ ପଚାରିଲା ।

"ତମେ ଜ୍ଞାନ-ବିଜ୍ଞାନ ରାଜ୍ୟର ସୀମାନ୍ତରେ । ଏ ରାଜ୍ୟର ଲୋକେ ଯେପରି ହସି ପାରିବେ, ସେପାଇଁ ତମେ ବର ମାଗି ଆଣିବା ଫଳରେ ସେମାନେ ସେ ଶକ୍ତି ପାଇଯାଇଛନ୍ତି । ତମେ





ବର୍ତ୍ତମାନ କନକ ଉପତ୍ୟକା ଦିଗରେ ଅଗ୍ରସର ହୁଅ।" ତପସ୍ୱୀ କହିଲେ।

"କିନ୍ତୁ ମୁଁ ତ ରାସ୍ତା ଭୁଲି ଯାଇଛି।"

ତପସ୍ୱୀ ହସିଲେ। "ତମେ ଆହୁରି ଭୁଲିଯାଇଛ ଯେ ନିଜକୁ ଅଦୃଶ୍ୟ କରି ପୁଣି କପରି ଦୃଶ୍ୟମାନ କରିବାକୁ ହୁଏ, ସେ ରହସ୍ୟ ତମକୁ ଜଣା ଅଛି। ତମେ ବର୍ତ୍ତମାନ ଏ ରାଜ୍ୟକୁ ଆସିଗଲଣି ଯେତେବେଳେ, ତମର ସେ ଜ୍ଞାନ କାମ ଦେବ ନିଶ୍ଚୟ!" ସେ କହିଲେ।

ତପସ୍ୱୀଙ୍କ ନିର୍ଦ୍ଦେଶ ମାନି ସେ ଗୋଟିଏ ପାହାଡ଼ ଆରୋହଣ କଲା। ପାହାଡ଼ ସେପାରରେ ଦେଖା ଯାଉଥିଲା ଜ୍ଞାନ-ବିଜ୍ଞାନ ରାଜ୍ୟ। ସେଇଠାରେ ଆରମ୍ଭ ହୋଇଥିଲା ତାର ଅଭିଯାନର ପ୍ରଥମ ପର୍ବ। ରାଜାଙ୍କ ନଗର ଖୁବ୍ ଦୂରରେ ନୁହେଁ। କେତେଜଣ ପ୍ରହରୀ ତାକୁ ଦେଖି ପକାଇବା ମାତ୍ରେ ଚିହ୍ନି ଦେଲେ। ସେମାନେ ସଙ୍ଗେ ସଙ୍ଗେ ରାଜା ଓ ରାଜପୁତ୍ରଙ୍କୁ ଖବର ଦେଲେ। ଛାତ ଉପରେ ଦେଖାଦେଲେ ସେ ଦୁହେଁ ତଥା ପାତ୍ର ମିତ୍ରମାନେ। ନଗର ଓ ପାହାଡ଼ ମଝିରେ କେତେ ଲୋକ ଆସି ଠୁଳ ହୋଇଗଲେ।

ଏବଂ ସେମାନେ ସମସ୍ତେ ରାଜୁକୁ ଅଭିବାଦନ ଜଣାଇବା ସଙ୍ଗେ ସଙ୍ଗେ ହସୁଥାନ୍ତି!

ରାଜୁର ଆନନ୍ଦ କହିଲେ ନ ସରେ। ରାଜୁ ଅଦୂରବର୍ତ୍ତୀ ଜନତାକୁ ଥରେ ନମସ୍କାର କରି ଓ ତପସ୍ୱୀଙ୍କୁ ପ୍ରଣାମ କରି ନିଜକୁ ଅଦୃଶ୍ୟ କରିଦେଲା—ସୁବର୍ଣ୍ଣ ପ୍ରତିମା ନିକଟରେ ଦୃଶ୍ୟମାନ ହେବାର ଇଚ୍ଛାଶକ୍ତି ପ୍ରୟୋଗ କରି।

• • •

ଉପରେ ନକ୍ଷତ୍ରମାନ ଥିଲେ ଉଜ୍ଜ୍ୱଳ ଚନ୍ଦ୍ରମା। ସ୍ଥାନଟି ଚିହ୍ନିବା ନିମନ୍ତେ ତାକୁ ମୁହୂର୍ତ୍ତଟିଏ ମାତ୍ର ଲାଗିଲା। ପଛରେ କଳ କଳ ଧ୍ୱନିରେ ଅବତରଣ କରୁଥିଲା ଜଳଧାରା। ସେହି ପ୍ରପାତ ଅତିକ୍ରମ କରି ସେ ଦିନେ ଅଜ୍ଞାତ ଦିଗନ୍ତ ଆଡ଼େ ଯାତ୍ରାରମ୍ଭ କରିଥିଲା।

ଉପରେ କୋଇଲିଟିଏ ରାବିଲା। ରାଜୁ ଅନାଇଲା। ଅପୂର୍ବ ପୁଲକରେ ସେ ଥରି ଉଠିଲା ପ୍ରାୟ। ସେ ସୁବର୍ଣ୍ଣ ପ୍ରତିମା ଥିବା ଶିଳାଖଣ୍ଡ ତଳେହିଁ ଠିଆ ହୋଇଥିଲା। ସେ ଉପରକୁ ଉଠିଗଲା। ନିଜ ଅଙ୍ଗୁଳିରୁ ମୁଦିଟି ବାହାର-

କରିବା ବେଳକୁ କିନ୍ତୁ ହଠାତ୍ ତା' ମନ ଭିତରେ ଆତଙ୍କର ଏକ ତରଙ୍ଗ ଖେଳିଗଲା । ମୁଦିଟି ସେ ପ୍ରତିମା ଅଙ୍ଗୁଳିରେ ପିନ୍ଧାଇ ଦେବା ମାତ୍ରେ ପ୍ରତିମା ଜୀବନ୍ୟାସ ପାଇବ ଠିକ୍ । କିନ୍ତୁ ତା'ପରେ ? ରାଜାଙ୍କ ଲୁବ୍ଧ ଦୃଷ୍ଟିରୁ ସେ କନ୍ୟାକୁ ସେ ରକ୍ଷା କରିବ କିପରି ?

ସେ ଯାହାହେଉ, କନ୍ୟାକୁ ଜୀବନ୍ତ ଦେଖିବାର ଆକାଂକ୍ଷା ସେ ଅଧିକ ସମୟ ସମ୍ବରଣ କରିପାରିଲା ନାହିଁ । ସେ ମୁଦିଟି ଖୋଲି ପ୍ରତିମା ଅଙ୍ଗୁଳିରେ ପିନ୍ଧାଇ ଦେଲା । ଯେତେ ଅବା ଗୋଟିଏ ବିଜୁଳି ତରଙ୍ଗରେ ପ୍ରତିମା ଚମକି ଉଠିଲା । ପର ମୁହୂର୍ତ୍ତରେ ପ୍ରତିମା ଦେହରେ ଜୀବନର ସଙ୍କେତ ଦେଖା ଦେଲା । ରାଜୁ ନିଜ ଆଖିକୁ କିପରି ବିଶ୍ୱାସ କରିବ, ତାହାହିଁ ଭାବୁଛି, ସେ କନ୍ୟା ନିଜ ସ୍ଥାନରୁ ଦୁଇପାଦ ଅବତରଣ କରି ରାଜୁ ଆଡ଼େ ଅନାଇ ହସିଲା ।

ରାଜୁ ସ୍ତବ୍ଧ ଭାବରେ ଠିଆ ହୋଇ ରହିଲା । ସେ କନ୍ୟାର ହସଠୁଁ ଅଧିକ ମଧୁର କିଛି ସେ ଜୀବନରେ ଜାଣି ନଥିଲା । କିନ୍ତୁ ସେ ହସ ଯେପରି ଅତି ପରିଚିତ ! କନ୍ୟାଟି କଥା କହିଲା । ସେ କଣ୍ଠସ୍ୱର ବି ଅତ୍ୟନ୍ତ ପରିଚିତ ଲାଗିଲା । କିନ୍ତୁ ତାହାଠୁଁ ବହୁତ ବଡ଼ ବିସ୍ମୟ ରାଜୁକୁ ଅପେକ୍ଷା କରିଥିଲା—ଯେତେବେଳେ କନ୍ୟାଟି କହିଲା : "ତା'ହେଲେ ଆମର ବିବାହ ହେଲା !"

"ବିବାହ ?"

"ନୁହେଁ ? ମୋ ମୁଦି ତମ ଅଙ୍ଗୁଳିକୁ ଗଳିଯାଇଥିଲା । ବର୍ତ୍ତମାନ ତମେ ମୁଦିଟି ମୋ ଅଙ୍ଗୁଳିରେ ପିନ୍ଧାଇ ଦେଲ । ଏହା ତ ବିବାହର ସମ୍ପୂର୍ଣ୍ଣ ଅନୁଷ୍ଠାନ !"

କନ୍ୟାର କଣ୍ଠସ୍ୱର ଥିଲା ଅତ୍ୟନ୍ତ ସ୍ନିଗ୍ଧ । ସେ ଯେ ସତ୍ୟ ଛଡ଼ା ଆଉ କିଛି କହି ନପାରେ, ସେଥିରେ ରାଜୁର ସନ୍ଦେହ ନଥିଲା ।

ଚତୁର୍ଥ ବର ଭାବରେ ରାଜୁ ଯାହା ପାଇବାକୁ ତୀବ୍ର ଇଚ୍ଛା କରୁଥିଲା ଅଥଚ ସେଭଳି ବର ମାଗି ପାରି ନଥିଲା, ତାହା ତେବେ ପୂର୍ଣ୍ଣ ହେଲା !

(ଆଗାମୀ ସଂଖ୍ୟାରେ ସମାପ୍ୟ)





# ଅନ୍ତଃପୁର-ବିଭ୍ରାଟ

ନିଶା ଗରଜୁଥାଏ । ଭୁହାକୁ ଭୁହା ବର୍ଷା ହେଉଥାଏ । ସାଇଁ ସାଇଁ ପବନରେ ଗଛଲତାମାନେ ଭୀଷଣ ଭାବରେ ଦୋହଲୁଥାନ୍ତି । ଘଡ଼ଘଡ଼ି ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଝଲସି ଉଠୁଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରନ୍ତେ ଶବସ୍ଥିତ ବେତାଳ କହିଲା, "ରାଜା, ଏ ନିଶାର୍ଦ୍ଧରେ ଯେ ତୁମେ ଆସି ଏ ଶ୍ମଶାନରେ ଏଭଳି କାମ କରୁଛ, ଏହା ସାହସର ପରିଚୟ ନିଶ୍ଚୟ । କିନ୍ତୁ ଏହା

## ବେତାଳ କଥା



ପଛରେ ପ୍ରେରଣା କ'ଣ ? ଅନେକ ସମୟରେ ମଣିଷ ଯେଉଁ କାମ କରେ, ତାହାର କୌଣସି ଯୁକ୍ତି ନଥାଏ । ଅବଶ୍ୟ ଦୈବକୁ ସେ କାମରେ ତାକୁ ସୁଫଳ ମିଳିପାରେ । କିନ୍ତୁ ନ ମିଳିବାର ସମ୍ଭାବନା ବି ଥାଏ । କଥାଟି ବୁଝାଇଦେବା ନିମନ୍ତେ ତୁମକୁ ଗୋଟିଏ କାହାଣୀ କହୁଛି, ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲଘୁ ମନେ ହେବ ।"

ବେତାଳ ଗପିଲା : ଅନେକ ଦିନ ଆଗର କଥା । ମହାବଳୀ ରାଜ୍ୟରେ ରାଜୁତି କରୁଥିଲେ ପ୍ରମୋଦ ବର୍ମା । ତାଙ୍କର ଏକମାତ୍ର କନ୍ୟା ହେଲେ ସୁଶ୍ରୀ । ରାଜକୁମାରୀ ସୁଶ୍ରୀ ବେଶ୍ ସୁଶିକ୍ଷିତା ଓ ବୁଦ୍ଧିମତୀ କନ୍ୟା । ରାଜ୍ୟର ଲୋକେ ତାଙ୍କୁ ଶ୍ରଦ୍ଧାପୂର୍ଣ୍ଣ ଚକ୍ଷୁରେ ଦେଖୁଥିଲେ ।

ରାଜକୁମାରୀ ବିବାହଯୋଗ୍ୟ ବୟସରେ ଉପନୀତା ହେଲେ । ରାଜା ଦିନେ ମନ୍ତ୍ରୀଙ୍କୁ ଡାକି କହିଲେ, "ରାଜକୁମାରୀଙ୍କ ପାଇଁ ସ୍ୱୟମ୍ବର ସଭାର ଆୟୋଜନ କରାଯାଉ ।"

"ହଁ, ମହିମା । ତାହାହିଁ କରିବା । ମୁଁ ଆଗେ ଜ୍ୟୋତିଷକୁ ଡାକି ଉପଯୁକ୍ତ ସମୟ ନିରୂପଣ କରେଁ ।" ମନ୍ତ୍ରୀ କହିଲେ ।

ଏ ପ୍ରସଙ୍ଗ ରାଜନଅରରେ ପ୍ରଚାର ହୋଇଗଲା । ମନ୍ତ୍ରୀଙ୍କ ପୁଅ ଦେବବ୍ରତ ମଧ୍ୟ ଏହା ଶୁଣିଲେ । ଶୁଣି ସେ ବିମର୍ଷ ଅନୁଭବ କଲେ । ପିଲାବେଳେ ସେ ରାଜକୁମାରୀଙ୍କ ସହ ଖେଳୁଥିଲେ । ରାଜକୁମାରୀଙ୍କ ପ୍ରତି ତାଙ୍କର ପ୍ରଗାଢ଼ ପ୍ରୀତି ଥିଲା । କିନ୍ତୁ ରାଜକୁମାରୀ ବଡ଼ ହେବା ପରେ ଆଉ କୌଣସି ପୁଅ ସହ ଖେଳିବାର ବା ମିଶିବାର ପ୍ରଶ୍ନ ନଥିଲା । କିନ୍ତୁ ଦେବବ୍ରତ ତାଙ୍କୁ ପାଶୋରି ପାରୁ ନଥିଲେ ।

ଦିନେ ରାଜକୁମାରୀ ସଖୀମାନଙ୍କ ସହ ରାଜଧାନୀ ପାଖରେ ଥିବା ଗୋଟିଏ ବଣକୁ ବୁଲିଗଲେ । ସେ ବଣ କେବଳ ରାଜପରିବାର ବା ମନ୍ତ୍ରୀ ଓ ସେନାପତିଙ୍କ ପରିବାରର ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଥାଏ । ହଠାତ୍ ସେଠାରେ ରାଜକୁମାରୀ ଦେବବ୍ରତଙ୍କୁ ଦେଖିଲେ ଓ ଖୁସି ହେଲେ ।

ଦେବବ୍ରତ ରାଜକୁମାରୀଙ୍କୁ ଅଭିବାଦନ ଜଣାଇ କହିଲେ, "ରାଜକୁମାରୀ, ଏଠାରେ ଆମର

ସାକ୍ଷାତ୍ ଯେ ଆକସ୍ମିକ, ତାହା ନୁହେଁ । ତୁମେ ଏଠାକୁ ଆସୁଛ ବୋଲି ଜାଣି ମୁଁ ଆସିଛି । କିଛି କଥା ଥିଲା ।"

ରାଜକୁମାରୀ ତାଙ୍କ ସଖୀମାନଙ୍କୁ ଦୂରକୁ ଯିବାକୁ ଇଙ୍ଗିତ ଦେଲେ । ଦେବବ୍ରତ ଓ ରାଜକୁମାରୀ ଅରଣ୍ୟର ବିଶ୍ରାମ ସ୍ଥଳରେ ବସିଲେ । କିଛି ସମୟ ପର୍ଯ୍ୟନ୍ତ ଦେବବ୍ରତ ତାଙ୍କୁ କିଛି କହିଲେ ନାହିଁ ।

ରାଜକୁମାରୀ ଅଳ୍ପ ହସି ପଚାରିଲେ, "ଏତେ କଷ୍ଟ କରି ଏଠାକୁ ଆସିଥିଲ କ'ଣ ଚୁପ୍ ହୋଇ ବସିବା ପାଇଁ ?"

"ନା । ଯଦି କହିବା ପାଇଁ ଅନୁମତି ଦେଉଛ, କହୁଛି । ଶୁଣିଲି ତୁମର ସ୍ୱୟମ୍ବର ହେବ ।" ଦେବବ୍ରତ କହିଲେ ।

"ତାହାହିଁ ପିତାଙ୍କର ଇଚ୍ଛା । କିନ୍ତୁ ହେବ ନାହିଁ । ଅତି ଶୀଘ୍ର ଗୋଟାଏ ବିଭ୍ରାଟ ହେବାକୁ ଯାଉଛି ।" ରାଜକୁମାରୀ କହିଲେ ।

"ବିଭ୍ରାଟ ? ମୁଁ କିଛି ବୁଝି ପାରୁନାହିଁ !" ଦେବବ୍ରତ ବିସ୍ମିତ ହୋଇ କହିଲେ ।

ରାଜକୁମାରୀ ଅଳ୍ପ ସମୟ ଚୁପ୍ ରହିଲେ । ତା'ପରେ କହିଲେ, "ତୁମକୁ କହିଦେଉଛି । ମୋ ସମ୍ପର୍କରେ ବି ତୁମର ମୋହଭଙ୍ଗ ହେବ । ତୁମେ ମୋତେ କ'ଣ କହିବାକୁ ଚାହୁଁଥିଲ, ଜାଣେନା । କିନ୍ତୁ ଆଗେ ବିଭ୍ରାଟ ବିଷୟ ଶୁଣିନିଅ । ତା'ପରେ ହୁଏତ ତୁମେ ଯାହା କହିବାକୁ ଚାହୁଁଥିଲ, ସେକଥା କହିବ ନାହିଁ !"



ଦେବବ୍ରତ ଆହୁରି ବିସ୍ମିତ ହୋଇ କହିଲେ, "କ'ଣ କହୁଛ, କୁହ ।"

"ମୋ ପିତା ଯେତେବେଳେ ତରୁଣ, ସେତେବେଳେ ମଲ୍ଲିପୁରର ରାଜାଙ୍କ କନ୍ୟା ସୁକାନ୍ତିଙ୍କ ସହିତ ତାଙ୍କ ବିବାହ ପ୍ରସ୍ତାବ ଆସିଲା । ସେତେବେଳେ ମୋ ପିତାଙ୍କ ପିତା ରାଜା । ସେ ଯାଇ ସୁକାନ୍ତିଙ୍କୁ ଦେଖି ମୁଗ୍ଧ ହେଲେ । ସୁକାନ୍ତିଙ୍କ ଚିତ୍ରପଟ ଦେଖି ମୋ ପିତା ମଧ୍ୟ ମୁଗ୍ଧ ହେଲେ । ବିବାହ ହୋଇଗଲା । କିନ୍ତୁ ତା'ପରେ ମୋ ପିତାଙ୍କ ମନରେ ସୁଖ ରହିଲା ନାହିଁ । କାରଣ ସୁକାନ୍ତି ସୁନ୍ଦରୀ ଠିକ୍, କିନ୍ତୁ ସ୍ୱାର୍ଥପର, ଅଶିକ୍ଷିତା ତଥା ଅମାର୍ଜିତା । ପିତା ବିରକ୍ତ ହେଉଥାନ୍ତି, କିନ୍ତୁ ତାଙ୍କ ବିରକ୍ତି ବୁଝିବା ଭଳି



ବିବେକ ବା ଶକ୍ତି ମଧ୍ୟ ରାଣୀଙ୍କର ନଥିଲା । ଦିନେ ପିତା ଶୀକାରକୁ ଯାଇଥାନ୍ତି । ଦେହରକ୍ଷୀମାନଙ୍କଠୁଁ ବିଚ୍ଛିନ୍ନ ହୋଇ ସେ ଗହନ ବଣ ଭିତରକୁ ଚାଲିଗଲେ । ହଠାତ୍ ତାଙ୍କ ଆଗରେ ଦେଖା ଦେଲା ସିଂହଟିଏ । ସିଂହ ଚମକ ପଡ଼ି ତାଙ୍କ ଘୋଡ଼ାକୁ ଆକ୍ରମଣ କଲା । ରାଜା ସିଂହକୁ ଶର ତଥା ଅସୀ ଦ୍ୱାରା ଆଘାତ କଲେ । ସିଂହ କିନ୍ତୁ ରାଜାଙ୍କୁ ସାମାନ୍ୟ ଆହତ କଲା । ତେବେ ଘୋଡ଼ା ଓ ସିଂହ ଉଭୟେ ମରିଗଲେ ।

"ରାଜା ତୃଷାର୍ତ୍ତ ହୋଇ ନଦୀର ସନ୍ଧାନରେ ଯାଉଁ ଯାଉଁ କ୍ଲାନ୍ତ ହୋଇ ବସି ପଡ଼ିଲେ । ନଦୀ ଦେଖାଯାଉଥିଲେ ମଧ୍ୟ ସେଯାଏ ଯାଇପାରିଲେ ନାହିଁ । ସେତିକବେଳେ ଜଣେ ଯୁବତୀ ନଦୀରୁ ପାଣି ନେଇ ଆସୁଥାନ୍ତି । ରାଜାଙ୍କୁ ସେ ପାଣି ପିଇବାକୁ ଦେଲେ ଓ ନିଜ କୁଡ଼ିଆ ପାଏ ନେଇଯାଇ ତାଙ୍କ ଆଘାତ ଉପରେ ଔଷଧ ଲଗାଇଦେବା ସଙ୍ଗେ ସଙ୍ଗେ ତାଙ୍କୁ ଦୁଧ ଓ ଫଳମୂଳ ଦ୍ୱାରା ଆପ୍ୟାୟିତ କଲେ । ରାଜା ସେ କନ୍ୟାଙ୍କ ବିଚକ୍ଷଣତା, ନମ୍ରତା ଓ ସେବାପରାୟଣତା ଦେଖି ଖୁବ୍ ମୁଗ୍ଧ ହେଲେ । କନ୍ୟାଙ୍କ ନାମ ହେଉଛି କୁମୁଦିନୀ । ସେ ଜଣେ ଋଷିଙ୍କ କନ୍ୟା ।

"ରାଜା ଋଷିଙ୍କୁ ଭେଟି କୁମୁଦିନୀଙ୍କୁ ବିଭା ହେବାର ପ୍ରସ୍ତାବ ଦେଲେ । ଋଷି ଏଥିରେ ଆପତ୍ତି କଲେନାହିଁ । ଏହା ଭିତରେ ରାଜାଙ୍କ ଦେହରକ୍ଷୀମାନେ ସେଠାରେ ପହଞ୍ଚିଗଲେ । ରାଜା ଗାନ୍ଧର୍ବ ରୀତିରେ କୁମୁଦିନୀଙ୍କୁ ବିଭା ହେଲେ ଓ ଦେହରକ୍ଷୀମାନଙ୍କ ଗହଣରେ ନଅରକୁ ଲେଉଟି ଆସିଲେ ।

"କହିବା ବାହୁଲ୍ୟ, ସୁକାନ୍ତ କୁମୁଦିନୀଙ୍କୁ ମୋଟେ ସହ୍ୟ କରିପାରିଲେ ନାହିଁ । କୁମୁଦିନୀଙ୍କୁ ବିଭା ହେବା ପରେ ରାଜା ଯେ ସୁକାନ୍ତଙ୍କ ପ୍ରତି ଖରାପ ବ୍ୟବହାର କଲେ, ତାହା ନୁହେଁ । ତଥାପି ସୁକାନ୍ତ ସର୍ବଦା କୁମୁଦିନୀଙ୍କ ଅନିଷ୍ଟ ପାଞ୍ଚୁଥାନ୍ତି । କିନ୍ତୁ କୁମୁଦିନୀ ନିଜ ଉଦାର ବ୍ୟବହାର ଦ୍ୱାରା ଅନ୍ତଃପୁରର ସମସ୍ତ ଦାସୀମାନଙ୍କ ମନ କିଣି ନେଇଥାନ୍ତି । ସୁକାନ୍ତ ଲୀଳାବତୀ ନାମକ ତାଙ୍କର ବୃଦ୍ଧା ଦାସୀକୁ ବାରମ୍ବାର

କହୁଥାନ୍ତି କି କୁମୁଦ୍ୱତୀ ବିରୁଦ୍ଧରେ କିଛି ମୋତେ କରିବାକୁ ହେବ । ଲୀଳାବତୀ ଦେଖିବା ବୋଲି କହୁଥାନ୍ତି ।

ଯଥା ସମୟରେ ଦୁଇଜଣଯାକ ରାଣୀ ଗର୍ଭବତୀ ହେଲେ । ରାଜା କହ୍ଲଦନ ପାଇଁ ଗୋଟିଏ ବିଶେଷ କାମରେ ସୀମାନ୍ତକୁ ଯାଇଥାନ୍ତି । ସେତିକିବେଳେ ଦୁଇ ରାଣୀ ଦିନକର ବ୍ୟବଧାନରେ ଦୁଇଟି କନ୍ୟା ସନ୍ତାନ ଜନ୍ମ ଦେଲେ । ଦ୍ୱିତୀୟ ଦିନ ରାଣୀ କୁମୁଦ୍ୱତୀ ଦେହତ୍ୟାଗ କଲେ । ସେ ଖବର ପାଇ ରାଣୀ ସୁକାନ୍ତି ଖୁସି ହେଲେ ଓ ଲୀଳାବତୀଙ୍କୁ ଡାକି କହିଲେ, "ଶୁଣ, ତୁମେ ଯେମିତି ହେଲେ କୁମୁଦ୍ୱତୀର କନ୍ୟାକୁ ଏଠାରୁ ବିଦା କର ।"



ରାଣୀ ଝିଅଟିକୁ ବୋଧହୁଏ ଇହଧାମରୁ ବିଦା କରିବାକୁ କହିଥିଲେ । ଲୀଳାବତୀ କିନ୍ତୁ ଗୋଟାଏ ଅଦ୍ଭୁତ କାମ କଲେ । ସେ କୁମୁଦ୍ୱତୀଙ୍କ ଝିଅକୁ ଆଣି ସୁକାନ୍ତିଙ୍କ ଶେଯରେ ରଖିଦେଲେ । ସୁକାନ୍ତିଙ୍କ କନ୍ୟାକୁ ନେଇଯାଇ ସହର ଭିତରେ ଥିବା ଜଣେ ଗରିବ ଲୋକ ଘରେ ରଖିଦେଇ ଆସିଲେ ।"

ରାଜକୁମାରୀ ସୁଶ୍ରୀ ଦେବବ୍ରତଙ୍କୁ ଏସବୁ ଘଟଣା ରହିବା ବେଳେ ଦେବବ୍ରତ ଆଶ୍ଚର୍ଯ୍ୟ ହୋଇ ଶୁଣୁଥାନ୍ତି । ହଠାତ୍ ତାଙ୍କୁ ଚମକାଇ ଦେଇ ସୁଶ୍ରୀ କହିଲେ, "ଦେବବ୍ରତ ! ମୁଁ ଅଳ୍ପଦିନ ଆଗରୁ ଜାଣିଲି ଯେ ମୁଁ ମୋର ମା ବୋଲଉଥିବା ରାଣୀ ସୁକାନ୍ତିଙ୍କ କନ୍ୟା ନୁହେଁ । ମୋତେ ଦାସୀ ଲୀଳାବତୀ ଏକଥା କହିଲି । ଲୀଳାବତୀ ବର୍ତ୍ତମାନ ମୃତ୍ୟୁ ଶଯ୍ୟାରେ । ତା'ର ଇଚ୍ଛା, ସେ ମୃତ୍ୟୁ ପୂର୍ବରୁ ରାଣୀ ପାଖରେ ଗୋପନରେ ସତ୍ୟ ପ୍ରକାଶ କରିଦେବ । ସଙ୍ଗେ ସଙ୍ଗେ ତା'ର ଭୟ ହେଉଛି, ରାଣୀ ଯେତେବେଳେ ଜାଣିବେ ଯେ ମୁଁ ତାଙ୍କ କନ୍ୟା ନୁହେଁ, କୁମୁଦ୍ୱତୀଙ୍କ କନ୍ୟା, ସେ ହୁଏତ ମୋର ଅନିଷ୍ଟ କରିବେ । ସୁକାନ୍ତି ହେଲେ ପାଟରାଣୀ । ରାଜାଙ୍କ ପୁଅ ନଥିବା ଦୃଷ୍ଟିରୁ, ତାଙ୍କର କନ୍ୟାକୁ ଯିଏ ବିଭା ହେବ, ସେ ରାଜା ହେବ । ମୁଁ ବି ଏହା ଚାହେଁ । ସତ୍ୟ ପ୍ରକାଶ ହେବା ସର୍ବଦା ଭଲ । ଖାଲି ଏସବୁ ସୁରୁଖୁରୁରେ କିପରି ହେବ ତାହାହିଁ ପ୍ରଶ୍ନ । ଦେବବ୍ରତ ! ଏସବୁ ଜାଣିବା ପରେ,




ଆଶାକରେଁ ତୁମେ ମୋତେ ଯାହା କହିବାକୁ ଚାହୁଁଥିଲ, ଆଜି ତାହା କହିବାର ପ୍ରେରଣା ଅନୁଭବ କରିବ ନାହିଁ ।"

ଦେବବ୍ରତ ଉଠି ଠିଆ ହେଲେ ଓ କହିଲେ, "ରାଜକୁମାରି ! ଏଥର ତୁମେ ସଖୀମାନଙ୍କ ସହ ବୁଲବୁଲି କର । ମୁଁ ଯାଏଁ ।"

ଦେବବ୍ରତ ଚାଲିଗଲେ । ରାଜକୁମାରୀ ଦୀର୍ଘଶ୍ୱାସ ଛାଡି ଉଠି ଠିଆ ହେଲେ ଓ କିଛି ସମୟ ସଖୀମାନଙ୍କ ସହ ଅରଣ୍ୟରେ ବୁଲି ଚାଲିଗଲେ ।

ପରଦିନ ରାଣୀଙ୍କ ଅନ୍ତଃପୁର ଆଗରେ ଜଣେ ସନ୍ନ୍ୟାସୀ ଠିଆ ହୋଇଥିବାର ଦେଖାଗଲା । ସେ ଅନ୍ତଃପୁର ଭିତରକୁ ଆସିପାରିଥିବା ଦୃଷ୍ଟିରୁ ସେ ଯେ ଜଣେ ବଡ଼ ସାଧୁ, ଏ ବିଷୟରେ ରାଣୀଙ୍କ ପରିଚାରିକାମାନଙ୍କର ସନ୍ଦେହ ରହିଲ ନାହିଁ । ରାଜାଙ୍କ ଅନୁମତି ନଥିଲେ ଦୁଇ ଜନପ୍ରସ୍ଥ ପ୍ରାଚୀର ଅତିକ୍ରମ କରି ସାଧୁ ସେଠାକୁ କିପରି ଆସନ୍ତେ ?

"ରାଣୀ ମା ! ମୁଁ ତ୍ରିକାଳଦର୍ଶୀ । ମୋତେ କିଛି ପଚାରିବ ଯଦି ପଚାରିପାର !" ସେ ଗମ୍ଭୀର କଣ୍ଠରେ ଘୋଷଣା କଲେ । ରାଣୀଙ୍କ ପରିଚାରିକାମାନେ ଦୌଡ଼ିଯାଇ ରାଣୀଙ୍କୁ ଏ ସମ୍ବାଦ ଦେଲେ । ରାଣୀ ସାଧୁଙ୍କୁ ଭିତରକୁ ପାଛୋଟି ନେଲେ ଓ ରାଜକୁମାରୀଙ୍କୁ ଡକାଇଲେ ।

ନିକଟ ଭବିଷ୍ୟତରେ ରାଜକୁମାରୀ ସୁଶ୍ରୀଙ୍କର ସ୍ୱୟଂବର ହେବାର ଥାଏ ବୋଲି ରାଣୀ ରାଜକୁମାରୀଙ୍କ ଭବିଷ୍ୟତ ଜୀବନ ବିଷୟରେ ପ୍ରଶ୍ନ ପଚାରିବାକୁ ଚାହିଁଲେ । ରାଜକୁମାରୀ ସେଠାକୁ ଆସି ପହଞ୍ଚିବା ମାତ୍ରେ ଛଦ୍ମବେଶରେ ଥିବା ସାଧୁଙ୍କୁ ଚିହ୍ନି ପକାଇ ଚମକି ଉଠିଲେ । କିନ୍ତୁ ମନର ଦୁଃଖ ଓ ଆବେଗ କୌଣସି ମତେ ପ୍ରକାଶ କଲେ ନାହିଁ । କାରଣ ଏବେ ତାଙ୍କ ଜୀବନର ସବୁଠାରୁ ବଡ଼ ସଙ୍କଟ ଉପସ୍ଥିତ ହୋଇଛି । ସାଧୁଟି ସେ କ'ଣ କହିବେ ଓ କ'ଣ କରିବେ ସେକଥା କିଛି ଜାଣି ନପାରି ରାଜକୁମାରୀ ମନେ ମନେ ଆତଙ୍କ ଅନୁଭବ କରୁଥା'ନ୍ତି ।

ସାଧୁ ରାଜକୁମାରୀଙ୍କୁ ନିରେଖି ଦେଖିଲେ । ତା'ପରେ ହସି ହସି କହିଲେ, "ଇଏ ତୁମର କନ୍ୟା ? ଇଏ ହେଉଛନ୍ତି ରାଜକୁମାରୀ ସୁଶ୍ରୀ ଯାହାଙ୍କର ସ୍ୱୟମ୍ବର ହେବାକୁ ଯାଉଛି ?"

"ସାଧୁବାବା, ଆପଣ ଯାହା କହିଲେ ତାହା ସତ । ଏଇ ଗୋଟିକ ସନ୍ତାନ ମୋର । ଇଏହିଁ ରାଜକୁମାରୀ ସୁଶ୍ରୀ ।" ରାଣୀ କହିଲେ ।

"ସମ୍ପୂର୍ଣ୍ଣ ମିଥ୍ୟା । ଅସମ୍ଭବ ! ସେ ଆପଣଙ୍କ କନ୍ୟା ହୋଇ ନପାରେ । ଅବଶ୍ୟ ସେ ରାଜକୁମାରୀ ସୁଶ୍ରୀ, କିନ୍ତୁ ଆପଣଙ୍କ ଜନ୍ମିତା କନ୍ୟା ନୁହେଁ । ଏହା ହୋଇ ନପାରେ । ଆପଣଙ୍କ ଜନ୍ମିତା କନ୍ୟା ଅନ୍ୟ କେଉଁଠି ଅଛି ଖୋଜି ବାହାର କରନ୍ତୁ ।" ସାଧୁ କହିଲେ ।

"ଏହା କିପରି କଥା ?" ରାଣୀ ପଚାରିଲେ ।

ସାଧୁବେଶୀ ଦେବବ୍ରତ ରାଜକୁମାରୀ ସୁଶ୍ରୀଙ୍କଠାରୁ ଯାହା ଜାଣିଥିଲେ, ସବୁ କହିଗଲେ । ବୃଦ୍ଧା ଲୀଳାବତୀଙ୍କୁ ଅଣା ହେଲା । ସେ କାନ୍ଦି ପକାଇ ସତକଥା କହିଗଲା ଓ କହିଲା, "ଆଜି ସାଧୁବାବା ଯେତେବେଳେ ତାଙ୍କ ଦିବ୍ୟଦୃଷ୍ଟିରେ ସବୁ କହିଦେଲେଣି, ମୁଁ ବା କିପରି ସତ୍ୟ ଗୋପନ କରିବ ?"

ସାଧୁବାବା କହିଲେ, "କିନ୍ତୁ ରାଣୀ ମା ! ମନେରଖ, ଏହି କନ୍ୟାର ଭାଗ୍ୟସହ ତୁମ ଭାଗ୍ୟ ଜଡିତ । ତୁମେ ଏହାର ଯୋଗୁଁ ବଞ୍ଚିଛ । ନହେଲେ ମରି ସାରନ୍ତଣି ।"

ଲୀଳାବତୀ କହିବା ଅନୁସାରେ ସେ ଗରିବ ଦମ୍ପତି ଓ ତାଙ୍କ ଘରେ ବଢ଼ିଥିବା କନ୍ୟାକୁ ଡକାଇ ଆଣି ଦେଖାଗଲା, ସେ ଝିଅ ସତରେ ସୁରପୁର ରାଣୀ ସୁକାନ୍ତି ଭଳି । ରାଣୀ ତାକୁ ଗ୍ରହଣ କଲେ । ତାହାର ସ୍ୱୟମ୍ବର ହେଲା ।



ଏହାପରେ ଦିନେ ଦେବବ୍ରତ ଆସି ରାଜାଙ୍କୁ କହିଲେ, "ମହାରାଜ ! ଆପଣ ଅନୁମତି ଦେଲେ କଥାଟିଏ କହିବ ।"

"କ'ଣ ?" ରାଜା ପଚାରିଲେ ।

"ମୋର ଅତ୍ୟନ୍ତ ଗଭୀର ଇଚ୍ଛା ଯେ ମୁଁ ରାଜକୁମାରୀ ସୁଶ୍ରୀଙ୍କୁ ବିଭା ହେବ ।" ଦେବବ୍ରତ ରାଜାଙ୍କୁ କହିଲେ । ରାଜା ଦେବବ୍ରତଙ୍କୁ ସ୍ନେହ ଚକ୍ଷୁରେ ଦେଖୁଥିଲେ । ସେ କହିଲେ, "କିନ୍ତୁ ସୁଶ୍ରୀ ଯଦି ସ୍ୱୟମ୍ବର ପାଇଁ ଇଚ୍ଛା କରିବ, ତେବେ..."

"ମହାରାଜ ! ସୁଶ୍ରୀଙ୍କର ମୋତେ ବିବାହ କରିବାକୁ ନିଶ୍ଚୟ ଇଚ୍ଛା ଅଛି ।" ଦେବବ୍ରତ କହିଲେ ।

ରାଜା ସୁଶ୍ରୀଙ୍କୁ ପଚ୍ଚରିଲେ । ସେ ନୀରବ ରହି ହସିଲେ । ରାଜା ବୁଝିଗଲେ । ଦୁହିଁଙ୍କ ବିବାହ ହୋଇଗଲା ।

କାହାଣୀଟି କହିସାରି ବେତାଳ କଣ୍ଠସ୍ୱର ତୀବ୍ର କରି ରାଜା ବିକ୍ରମଙ୍କୁ ପ୍ରଶ୍ନ କଲା : "ରାଜା ! ରାଜକୁମାରୀ ସୁଶ୍ରୀ ଯାହା ତାଙ୍କୁ ଗୋପନରେ କହିଥିଲେ, ଦେବବ୍ରତ ତାହା ସାଧୁ ବେଶରେ ଆସି ସମସ୍ତଙ୍କ ଆଗରେ ପ୍ରକାଶ କରିଦେଲେ କପରି ? ପୁଣି ସୁଶ୍ରୀ ତାଙ୍କୁ ବିଭା ହେବାକୁ ଚାହାନ୍ତି ବୋଲି ସେ ଜାଣିଲେ କପରି ? ସୁଶ୍ରୀ ତ ଏକଥା ତାଙ୍କୁ କହି ନଥିଲେ ! ରାଜା ! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ଦେବବ୍ରତ ବୁଦ୍ଧିମାନ । ସେ ବୁଝିପାରିଲେ ଥରେ ଲୀଳାବତୀ ମନକୁ ସବୁ କଥା ସ୍ପଷ୍ଟ କରିଦେବାର ଚିନ୍ତା ଆସିଛି ମାନେ କଥାଟି ପ୍ରକାଶ ପାଇଯିବ । ସେଥିରେ ରାଣୀ ସୁକାନ୍ତି ହୁଏତ ସୁଶ୍ରୀଙ୍କର ସର୍ବନାଶ କରିବେ ! ସର୍ବସମକ୍ଷରେ କଥାଟି ଜଣାପଡିଗଲେ ରାଣୀ ଅନିଷ୍ଟ କରିବାକୁ ସାହସ କରିବେ ନାହିଁ । ତା'ଛଡ଼ା ସାଧୁବେଶୀ ଦେବବ୍ରତ କହିଦେଇଥିଲେ କି ସୁଶ୍ରୀଙ୍କ ଭାଗ୍ୟ ଯୋଗୁଁ ରାଣୀ ବଞ୍ଚିଛନ୍ତି ।

ଦ୍ୱିତୀୟରେ, ସୁଶ୍ରୀ ତାଙ୍କୁ ବିବାହ କରିବାକୁ ଅନିଚ୍ଛୁକ ଥିଲେ ଏତେ କଥା କହିନଥାନ୍ତେ । ରାଜକୁମାରୀ ଖାଲି ଦେବବ୍ରତଙ୍କୁ ଚେତାଇ ଦେବାକୁ ଚାହୁଁଥିଲେ ଯେ ତାଙ୍କୁ ବିଭା ହୋଇ ଭବିଷ୍ୟତରେ ଦେବବ୍ରତ ଯଦି ରାଜା ହେବାର ସ୍ୱପ୍ନ ଦେଖୁଥିବେ, ତାହା ହେବ ନାହିଁ । ସୁଶ୍ରୀ ଯେ ତାଙ୍କୁ ବିଭା ହେବାକୁ ଚାହୁଁଥିଲେ, ଏକଥା ରାଜା ସୁଶ୍ରୀଙ୍କୁ ପ୍ରଶ୍ନ କରିବା ପରେ ପ୍ରମାଣ ହୋଇଗଲା ।"

ରାଜା ବିକ୍ରମଙ୍କ ଉତ୍ତରଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡିଲା ।

(କଳ୍ପିତ)



# ଜ୍ଞାନ ସମ୍ଭାର

## ଏ ମାସର ଐତିହାସିକ ବ୍ୟକ୍ତି

## ସୁରଦାସ



ସୁରଦାସ ୧୪୭୮ ମସିହା ଡିସେମ୍ବର ୯ ତା: ରେ ଜନ୍ମଗ୍ରହଣ କରିଥିଲେ । ସନ୍ଥ ଓ କବି ହିସାବରେ ବିଖ୍ୟାତ ଏହି ମହାପୁରୁଷ ଥିଲେ ଅନ୍ଧ । ଅଥଚ ତାଙ୍କ ଆରାଧ୍ୟ କୃଷ୍ଣ ଓ ଅନ୍ୟାନ୍ୟ କଥାକୁ ସେ ଏପରି ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି ଯେ ସେ ଦେଖିପାରୁ ନଥିଲେ ବୋଲି ବିଶ୍ୱାସ କରିବା ସହଜ ନୁହେଁ । ମନେହୁଏ, ଆଖି ନଥିବା ସତ୍ତ୍ୱେ ତାଙ୍କର ଦେଖିବାର ଶକ୍ତି ଥିଲା ।

ଆଗ୍ରା ଓ ମଥୁରା ମଧ୍ୟବର୍ତ୍ତୀ ରୁନ୍‌କ୍ତା ନାମକ ଗ୍ରାମରେ ତାଙ୍କର ଜନ୍ମ ବୋଲି କେତେକେ ବିଶ୍ୱାସ କରୁଥିବା ସ୍ଥଳେ ଅନ୍ୟ କେତେକ କହନ୍ତି ସେ ଦିଲ୍ଲୀ ନିକଟବର୍ତ୍ତୀ ସିହି ଠାରେ ଜନ୍ମ ଗ୍ରହଣ କରିଥିଲେ । ଗୋଟାଏ କିମ୍ବଦନ୍ତୀ ଅନୁସାରେ ତାଙ୍କ ବାପା ଆକବରଙ୍କ ଦରବାରରେ ଜଣେ ଗାୟକ ଥିଲେ । ରାଜା ପୃଥ୍ୱୀରାଜ ଚୌହାନଙ୍କ ଦରବାରୀ କବି ଚାନ୍ଦ୍ ବର୍ଦ୍ଦାଇ ସୁରଦାସଙ୍କ ପୂର୍ବପୁରୁଷ ବୋଲି ଆଉ କେତେକ କହନ୍ତି । କୁହାଯାଏ, ତାଙ୍କ ଭାଇମାନେ ଯୁଦ୍ଧକୁ ଯାଇ ଆଉ ଫେରିଲେ ନାହିଁ । ସେମାନଙ୍କ ସନ୍ଧାନରେ ଯାଇ ସୁରଦାସ ଗୋଟାଏ କୂଅ ଭିତରେ ଛଅଦିନ ରହିଲେ । ସେହି ସମୟ ଭିତରେ ସେ କୃଷ୍ଣଙ୍କୁ ଧ୍ୟାନ କରି କିଛି ଅପୂର୍ବ ଅଭିଜ୍ଞତା ଅର୍ଜନ କଲେ । କୂଅ ଭିତରୁ ସେ କିପରି ବାହାରିଲେ, ସେକଥା ସେ ନିଜେ ବି କହିପାରୁ ନଥାନ୍ତି । କିନ୍ତୁ ସେବେଠୁଁ ସେ ଅନବରତ କୃଷ୍ଣ ନାମ ଗାନ କରୁଥାନ୍ତି । ତାଙ୍କ ରଚିତ କବିତା ସବୁ 'ସୁରସାଗର' ନାମକ ବହିରେ ସଙ୍କଳିତ ହୋଇଛି । ସେସବୁର ସଂଖ୍ୟା ପାଞ୍ଚ ହଜାର । ଆହୁରି ଅନେକ ଲୁପ୍ତ ହୋଇଯାଇଛି । ସେ ପିତାମାତାଙ୍କ ସହ ମଥୁରା ଆସି ବିଖ୍ୟାତ ସାଧୁ ବଲ୍ଲଭାଚାର୍ଯ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ ବୋଲି ଅନେକଙ୍କର ଧାରଣା ।

## ସେ କିଏ ?

ପ୍ରଶାନ୍ତ ଦିଗ୍‌ବଳୟରେ ସୂର୍ଯ୍ୟ ଅସ୍ତ ଯାଉଥିଲେ । ଗାଁ ସେପାଖ ବନାନୀରୁ ଅନ୍ଧାର ମାଡ଼ି ଆସୁଥିଲା । ଦୂର ପ୍ରାନ୍ତର ଭିତରୁ ଘର ବାହୁଡ଼ା ଗୋରୁପଲଙ୍କ ହମ୍ବାରଡ଼ି ଶୁଭୁଥିଲା । ଚତୁର୍ଦ୍ଦିଗ ଶାନ୍ତ ।

ଦୁଇ ଗାଁ ମଝିରେ ଥିବା ଧାନ ବିଲ ଅତିକ୍ରମ କରୁଥିଲା ବାଳକଟିଏ । ଅଦୂରରେ ନଦୀ । ପଶ୍ଚିମ ଦିଗନ୍ତରେ ଖଣ୍ଡିଏ ମେଘ ସୂର୍ଯ୍ୟାସ୍ତର ସୁବର୍ଣ୍ଣ ଦ୍ୟୁତିକୁ ପ୍ରତିଫଳିତ କରୁଥିଲା । ବାଳକଟିର ଆଖିକୁ ସବୁ କିଛି ଦିଶୁଥିଲା ସୁନ୍ଦର' ସେ ମନେ ମନେ ଏ ସୃଷ୍ଟିର ସୌନ୍ଦର୍ଯ୍ୟ ଯୋଗୁଁ ଭଗବାନଙ୍କୁ କୃତଜ୍ଞତା ଜଣାଉଥିଲା ।

ହଠାତ୍ ଦଳେ ପକ୍ଷୀ ସେ ମେଘ ଉପରଦେଇ ଉଡ଼ିଗଲେ । ସେମାନଙ୍କ ପକ୍ଷ ସୂର୍ଯ୍ୟାସ୍ତର ରଙ୍ଗରେ ଅପୂର୍ବ ଦିଶୁଥାଏ । ସେ ଦିଗ୍‌ବଳୟ, ସେ ମେଘ ଓ ସେ ପକ୍ଷୀଦଳ ବାଳକଟିକୁ ଏତେ ମଧୁର ଲାଗିଲା ଯେ ସେ ସ୍ତବ୍ଧ ହୋଇ ଠିଆ ହୋଇ ରହିଲା । ମୁହୂର୍ତ୍ତିକ ଭିତରେ ବାହାର ଜଗତକୁ ଭୁଲିଯାଇ ସେ ନିଜ ଅନ୍ତରରେ ଲୀନ ହୋଇଗଲା । ଆଧ୍ୟାତ୍ମିକ ଭାଷାରେ ଯେଉଁ ଭାବକୁ ସମାଧି କହନ୍ତି, ତା'ର ସେହି ଅନୁଭୂତି ହେଲା । ପରବର୍ତ୍ତୀ କାଳରେ ବାଳକଟି ବିଖ୍ୟାତ ଯୋଗୀ ଓ ଗୁରୁରେ ପରିଣତ ହେଲେ ।

କିଏ ସେଦିନର ସେ ବାଳକ ?

(ଅଷ୍ଟମ ପୃଷ୍ଠାରେ ଉତ୍ତର)



ଅଳ୍ପ ଆଲୁଅରେ



ଉଜ୍ଜ୍ୱଳ ଆଲୋକରେ

# ଆଖିର ଆଚରଣ

**ନିର୍ଦ୍ଦେଶ :**

ଯେତେବେଳେ ତମ ଗୃହପଠେ ଆଲୁଅ ବେଶ ଉଜ୍ଜ୍ୱଳ ଥିବ, ସେତେବେଳେ ତମର କୌଣସି ବନ୍ଧୁକୁ ଆଖି ବନ୍ଦ କରିବାକୁ କୁହ । ମିନିଟିଏ ପରେ ତାକୁ ଆଖି ଖୋଲିବାକୁ କୁହ ଓ ତହିଁ ଭିତରକୁ ଅନାଅ । ତା' ଆଖି ହଠାତ୍ ଆଲୁଅ ସହ କିପରି ନିଜକୁ ଖାପ୍ ଖୁଆଉଛି ବୁଝି ପାରୁଛ ?

**କ'ଣ କିପରି ହୁଏ :**

ତମ ବନ୍ଧୁର ଡୋଳା ପ୍ରଥମେ ଆଲୁଅ ଭିତରେ ବଡ଼ ଦେଖାଯିବ । ତା'ପରେ କ୍ରମେ ତାହା ଛୋଟ ହୋଇ ଆସିବ । ଏହାର କାରଣ ଡୋଳାକୁ ଯେଉଁ ବଳୟ ଘେରି ରହିଥାଏ, ତାହା ଆଲୁଅ ସମ୍ପର୍କରେ ଆସି ବଡ଼ ହୋଇ ଡୋଳାର କିଛି ଅଂଶକୁ ଚତୁର୍ଦ୍ଦିଗରୁ ମାଡ଼ିବସେ । ଫଳରେ ଡୋଳା ଛୋଟ ଦେଖାଯାଏ ।

ଫଟୋ କ୍ୟାମେରାର ସ୍ୱୟଂଚାଳିତ ଲେନ୍ସ ଯେପରି ଆପେ ଆପେ ଆଲୋକର ପ୍ରବେଶ ପଥକୁ ସଙ୍କୁଚିତ ବା ପ୍ରସାରିତ କରେ, ଡୋଳା ଚାରିପଟର ବଳୟ ସେହିପରି ଆଚରଣ କରେ । ବାହାରେ ଆଲୋକ କମ୍ ହେଲେ, ଆଖିର ସେ ଅଂଶ ପ୍ରସାରିତ ହୋଇ ଅଧିକ ଆଲୋକ ଭିତରକୁ ନିଏ । ବାହାର ଆଲୁଅ ଉଜ୍ଜ୍ୱଳ ହେଲେ ଏହା ବଳେ ବଳେ ସଙ୍କୁଚିତ ହୋଇଯାଏ । ହଠାତ୍ ଉଜ୍ଜ୍ୱଳ ଆଲୁଅ ଭିତରକୁ ଆସିଲେ ଲୋକେ ମୁହୂର୍ତ୍ତିକ ପାଇଁ ଅନ୍ଧ ହେଲା ଭଳି ମନେ କରନ୍ତି—ଏହା ଜଣାଶୁଣା କଥା ।

## ଜଗତର ବିସ୍ମୟ

(ପୂର୍ବ ଥର ପିରାମିଡ ବିଷୟରେ କୁହାଯାଇଥିଲା ।)

# ବାବିଲୋନର ବଗିଚା

କିମ୍ବଦନ୍ତୀ ଅନୁସାରେ ଜଣେ ରାଜକୁମାରୀ ଥିଲେ, ତାଙ୍କ ନାମ ସେମିରାମିସ୍ । ସେ ମତ୍ସ୍ୟ ଜଗତର ଦେବୀ ଆଟାର୍ଗାଟିସ୍‌ଙ୍କ କନ୍ୟା । ତାଙ୍କୁ ଖାଦ୍ୟପେୟ ଦେଇ ପାଳନ କରିଥିଲେ କପୋତମାନେ । ସିରିଆ ରାଜାଙ୍କର ଜଣେ ପରିଚାରକ ତାଙ୍କୁ ନେଇ-ଯାଇ ନିଜ ଘରେ ରଖିଲା । ସମୟ କ୍ରମେ ସେ ସିରିଆ ରାଜାଙ୍କୁ ବିଭା ହେଲେ । ରାଜାଙ୍କ ମୃତ୍ୟୁ ହେବାରୁ ସେ ନିଜେ ସିଂହାସନରେ ବସିଲେ । ସେ ଅନେକ ରାଜ୍ୟ ଜୟ କଲେ । ଖାଲି ଭାରତ ଜୟ କରିପାରିଲେ ନାହିଁ ବୋଲି ତାଙ୍କର ଶୋଚନା ରହିଗଲା ।

ସେ ବହୁତ ବଡ଼ ବଡ଼ ଇମାରତ୍ ଗଢ଼-ଥିଲେ । ପର୍ବତ କାଟି ଭିନ୍ନ ଭିନ୍ନ ସ୍ଥାନକୁ ରାସ୍ତା ତିଆରି କରାଇଥିଲେ । ବାବିଲୋନ୍‌ର ବିଖ୍ୟାତ ବଗିଚା ସେ ପ୍ରତିଷ୍ଠା କରିଥିଲେ ବୋଲି କୁହାଯାଏ । ଏହାକୁ ଝୁଲନ୍ତା ବଗିଚା ବୋଲି କୁହାଯାଏ । କାରଣ, ପର୍ବତ ଉପରେ ଥାକ ଥାକ ହୋଇ ଏହାକୁ ଏମିତି ଭାବରେ ବଢ଼ାଇଥିଲେ ଯେ ଦୂରରୁ ଏହା ଝୁଲୁଥିବା ଭଳି ମନେ ହେଉଥାଏ । ପ୍ରତି ଥାକର ବଗିଚା ଏକ ଏକ ଚତୁଷ୍କୋଣ ଭୂମି ଉପରେ ଥାଏ । ଗୋଟିଏ ଥାକର ଗୋଟିଏ ପାଖର ଦୈର୍ଘ୍ୟ ସାତ ଶହ ଫୁଟ । ଗଛଲତା ସବୁକୁ ଜଳ ଯୋଗାଣ ପାଇଁ ସୁନ୍ଦର ବ୍ୟବସ୍ଥା ହୋଇଥିଲା ।

ଇତିହାସର ହିସାବରେ ସେମିରାମିସ୍ ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀରେ ରାଜୁତି କରିଥିଲେ । କେତେକ ଐତିହାସିକଙ୍କ ମତରେ ଝୁଲନ୍ତା ବଗିଚାର ନିର୍ମାତା ହେଲେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଏସିରିଆରେ ରାଜୁତି କରି-ଥିବା ରାଜା ନେବୁଚାଦ୍‌ନାଜାର୍ । କୁହାଯାଏ, ତାଙ୍କର ଜଣେ ରାଣୀ ଗୋଟିଏ ପାର୍ବତ୍ୟ ମୂଲକର ଝିଅ ଥିଲେ । ବାପାଘର ଅଞ୍ଚଳର ଅରଣ୍ୟକୁ ସେ ଝୁରି ହେବାରୁ ରାଜା ତାଙ୍କ ସନ୍ତୋଷ ପାଇଁ ଏ ଉଦ୍ୟାନ ନିର୍ମାଣ କରିଥିଲେ ।



# ଚୀନ ଦେଶର

ପ୍ରାଚୀନ କାଳରେ ଦେଶବିଦେଶ ଭ୍ରମଣ କରିଥିବା ପରିବ୍ରାଜକମାନେ ଯେଉଁ ବିବରଣୀ ରଖିଯାଇଛନ୍ତି, ସେସବୁ ଇତିହାସରେ ବିଶେଷ ଉପାଦାନ ।

ଅତୀତରେ ଭ୍ରମଣ ଆଜିକାଲି ଭଳି ସହଜ ନଥିଲା । ଅବଶ୍ୟ ଅଜଣାକୁ ଜାଣିବାର ଆନନ୍ଦ ସେତେବେଳେ ଥିଲା ଅଧିକ । ସେ କାଳରେ ଖାଲି ସ୍ଥାନ ଦେଖିବା ପାଇଁ ବା ମଉଜ୍ କରିବା ପାଇଁ ବୁଲି ବାହାରିବା ଭଳି ମଣିଷ ଖୁବ୍ କମ୍ ଥିଲେ । ବାଣିଜ୍ୟ, କିମ୍ବା ଜ୍ଞାନ ପିପାସା— ଭ୍ରମଣ ପଛରେ ରହିଥିଲା ଏହି ଦୁଇଟି ଯେ କୌଣସି ଗୋଟିଏ ପ୍ରେରଣା ।

ସପ୍ତମ ଶତାବ୍ଦୀରେ ଚୀନ୍‌ରୁ ଭାରତକୁ ଆସିଥିଲେ ଜଣେ ଜ୍ଞାନ-ପିପାସୁ । ସେ ହୁଏନ୍ ସାଂ । ସେ ଥିଲେ ବୌଦ୍ଧଧର୍ମାବଲମ୍ବୀ । ବୌଦ୍ଧଧର୍ମ ସମ୍ପର୍କରେ ଅଧିକ ଜ୍ଞାନ ଅର୍ଜନ ପାଇଁ ସେ ଆସିଥିଲେ । ସେ ନିଜ ଭ୍ରମଣର ବିସ୍ତୃତ ବିବରଣୀ ରଖିଯାଇଛନ୍ତି । ସେ ଭୟଙ୍କର ଗୋବି ମରୁଭୂମି ଅତିକ୍ରମ କରି ତୁର୍ଫାନ୍ ନାମକ ସୁନ୍ଦର ସହରରେ ପହଞ୍ଚିଥିଲେ ।



ଚନ୍ଦମାମୁଁ କ୍ରୋଡ଼ପତ୍ର :

# ଜ୍ଞାନ ସମ୍ଭାର

ଏ ମାସର ଐତିହାସିକ ବ୍ୟକ୍ତିତ୍ୱ

## ଗୁରୁ ନାନକ



୧୪୬୯ ମସିହାର କାର୍ତ୍ତିକ (ନଭେମ୍ବର) ପୂର୍ଣ୍ଣିମା ଦିନ ପଞ୍ଜାବର ଯେଉଁ ଗ୍ରାମରେ ନାନକ ଜନ୍ମଗ୍ରହଣ କରିଥିଲେ, ଆଜି ତାଙ୍କରି ସ୍ମୃତିରେ ସେ ଗ୍ରାମର ନାମ ନାନକାନା ।

ବିଦ୍ୟାଳୟରେ ତାଙ୍କୁ ଶିକ୍ଷକ ଯେତେ ପ୍ରଶ୍ନ ପଚାରୁଥିଲେ, ତାହାଠୁଁ ଅଧିକ ପ୍ରଶ୍ନ ସେ ଶିକ୍ଷକଙ୍କୁ ପଚାରୁଥିଲେ । ସାଧାରଣତଃ ଈଶ୍ୱର କ'ଣ, ସତ୍ୟ କ'ଣ ଏହିସବୁ ଥିଲା ତାଙ୍କର ପ୍ରଶ୍ନ । ତାଙ୍କୁ ଯେତେବେଳେ ଚଉଦ ବର୍ଷ, ତାଙ୍କ ବାପା ତାଙ୍କୁ ବାହା କରାଇଦେଇ ସୁଲତାନପୁର ପଠାଇ ଦେଲେ । ସେଠାରେ ସେ ଚାକିରୀ କରି ଯାହା ଦରମା ପାଉଥିଲେ, ତା'ର ଅଧିକାଂଶ ଗରୀବ ଲୋକଙ୍କ ଭିତରେ ବିତରଣ କରି ଦେଉଥିଲେ । ଯାହାହେଉ, ସେ ଅଳ୍ପଦିନ ପରେ ଚାକିରୀ ଛାଡ଼ି ଏଣେ ତେଣେ ବୁଲି ଲୋକଙ୍କୁ ବୁଝାଇବାକୁ ଲାଗିଲେ ଯେ ଭଗବାନ ଏକ ଏବଂ ତାଙ୍କ ଆଗରେ ସବୁ ମଣିଷ ସମାନ । ସତ୍ୟ କୌଣସି ଗୋଟିଏ ଧର୍ମର ଏକଚଟିଆ ସମ୍ପଦ ନୁହେଁ । ଅନ୍ୟର ବିଶ୍ୱାସ ବା ଧର୍ମକୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ପରମେଶ୍ୱରଙ୍କ ଉପରେ ଚୂଡ଼ାନ୍ତ ବିଶ୍ୱାସ ରଖିବା ହେଲା ନାନକଙ୍କ ଶିକ୍ଷାର ମୂଳ କଥା ।

ସେ ଶେଷ ଜୀବନରେ ବ୍ୟାସ ନଦୀ କୂଳରେ କର୍ତ୍ତାରପୁରଠାରେ ରହିଥିଲେ । ତାଙ୍କ ପ୍ରବର୍ତ୍ତିତ ପନ୍ଥ ହେଲା ଶିଖ ଧର୍ମର ଭିତ୍ତି । ସତୁରୀ ବର୍ଷ ବୟସରେ ସେ ପ୍ରାଣ ତ୍ୟାଗ କଲେ । ଉଭୟ ହିନ୍ଦୁ ଓ ମୁସଲମାନମାନେ ନିଜ ନିଜ ମତ ଅନୁସାରେ ତାଙ୍କ ସତ୍କାର କରିବାକୁ ଜିଦ କରୁଥାନ୍ତି । କିନ୍ତୁ ଆବରଣ କାଢ଼ି ଦେବା ବେଳକୁ କେତେକ ଫୁଲଢ଼ଙ୍କା ଭିତରେ ଆଉ କିଛି ନାହିଁ । ସେହି ଫୁଲ ଗଛିକୁ ଦୁଇ ଦଳ ଭାଗ କରିନେଲେ ।

## ସେ କିଏ ?

ଅନ୍ଧାର ରାତି । ଯୁବକଟିଏ ଏକାକୀ ହ୍ରଦ କୂଳରେ ଥିବା କାଳୀ ମନ୍ଦିରରେ ପଶି କାନ୍ଦି କାନ୍ଦି ଦେବୀଙ୍କୁ କହିଲା, "ଆଜି ଯେଉଁ ଅପମାନ ପାଇଲି, ତା'ପରେ ମୋର ଜୀବନ ପ୍ରତି କୌଣସି ଆକର୍ଷଣ ନାହିଁ । ବର୍ତ୍ତମାନ ମୁଁ ଏଇ ହ୍ରଦରେ ପ୍ରାଣ ହାରିବି ।"

"ସେ କାମ କର ନା । ଆତ୍ମହତ୍ୟା କଲେ ଆହୁରି ଭୀଷଣ କଷ୍ଟ ଭୋଗିବୁ ।" ଏକ ଦିବ୍ୟ କଣ୍ଠସ୍ୱର ଶୁଣାଗଲା ।

"ମା ! ତା'ହେଲେ ମୋତେ ପଣ୍ଡିତ କରିଦିଅ ।" ଯୁବକ ପ୍ରାର୍ଥନା କରି କହିଲା ।

"ପୁଅ ! ତୋ ଚେତନା ଏତେ କଞ୍ଚା ଯେ ପଣ୍ଡିତ ହେବା ପାଇଁ ଅନ୍ତତଃ ସାତ ଜନ୍ମ ଲାଗିବ ।" ଦିବ୍ୟ କଣ୍ଠସ୍ୱର ଉତ୍ତର ଦେଲା ।

"ତା'ହେଲେ ମୁଁ ମରିବି ।" ଯୁବକଟି ଏହା କହି ହ୍ରଦକୁ ଡେଇଁ ପଡ଼ିବା ପାଇଁ ପ୍ରସ୍ତୁତ ହେଲା ।

ଦେବୀ ତାକୁ ଶାନ୍ତ କଲେ । ସେଇଠି ସାତଥର ମରି ଯୁବକ ସାତଥର ପ୍ରାଣ ପାଇଲା । ଏହିପରି ଭାବରେ ସାତ ମୁହୂର୍ତ୍ତରେ ସାତଜନ୍ମ ବିତାଇ ସେ ପଣ୍ଡିତ ବନି ମନ୍ଦିର ବାହାରକୁ ଆସିଲା ।

କିମ୍ବଦନ୍ତୀର ଏ ଯୁବକ କିଏ ?

(ଅଷ୍ଟମ ପୃଷ୍ଠାରେ ଉତ୍ତର)

# ଆକର୍ଷଣ



## ପ୍ରଣାଳୀ

ଗୋଟିଏ ପିଙ୍ଗ୍‌ପଙ୍ଗ୍ ବଲ୍‌କୁ ଟେପ୍ (ଅଠା କାଗଜ) ଦ୍ୱାରା ଖଣ୍ଡିଏ ସୂତାରେ ସଂଲଗ୍ନ କର। ବଲ୍‌ଟିକୁ ଜଳ ଧାରା ମୁହଁରେ ଧର। ନିଜ ହାତକୁ ଧୀରେ ଧୀରେ ଜଳଧାରର ଗୋଟାଏ କଡକୁ ନେଇଯାଅ। ବଲ୍‌ଟିକୁ ଜଳଧାରା ଆକର୍ଷଣ କଲାଭଳି ମନେ ହେଉଛି କି? ବଲ୍‌ଟି ଜଳଧାରା ଭିତରେ ଅଧାଅଧି ରହୁଛି କି?

**କାହିଁକି ଏପରି ହେଉଛି :**

ବଲ୍‌ ନିଶ୍ଚୟ ଜଳଧାରା ଦ୍ୱାରା ଆକର୍ଷିତ ହେବାର ଦେଖାଯିବ। କାରଣ ଜଳଧାରା ବଲ୍‌ଟି ଉପରେ ଯେତିକି ଚାପ ଦେବ, ତାଠୁଁ ଅଧିକ ଚାପ ଦେବ ପବନ-ବଲ୍‌ଟିର ଅନ୍ୟ ଅଂଶ ଉପରେ।

ଯେତେବେଳେ ପାଣି ଅଧିକ ବେଗରେ ପଡ଼ିବ, ସେତେବେଳେ ବଲ୍‌ଟିକୁ ଜଳଧାରା ଭିତରୁ ବାହାର କରିନେବା ପାଇଁ ବେଶି ଜୋର୍ ଦେବାକୁ ହେବ କି? ପାଣିର ବେଗ କମିଗଲେ କ'ଣ ହେବ? ସବୁଠୁଁ ଅଧିକ ବେଗରେ ପାଣି ଛାଡ଼ିଲେ ତହିଁ ଭିତରୁ ବଲ୍‌କୁ ବାହାର କରିନେବାକୁ କେତେବେଳ ଲାଗିବ?

ପିଙ୍ଗ୍‌ପଙ୍ଗ୍ ଭଳି ଅନ୍ୟ ବଲ୍‌ମାନଙ୍କ କ୍ଷେତ୍ରରେ ଠିକ୍ ଏଇଆ ହେବ କି?" ପରୀକ୍ଷା କରି ଦେଖ।

ଯଦି ରାସ୍ତା କଡ଼ରେ ଗୋଟିଏ ପବନ-ଭର୍ତ୍ତି ବେଲୁନ୍ ବା ଖଣ୍ଡିଏ କାଗଜ ପଡ଼ିଥିବ, ତେବେ ସେ ରାସ୍ତାଦେଇ କାର୍‌ଟିଏ ଯିବା ମାତ୍ରେ ବେଲୁନ୍ ବା କାଗଜ ସେଆଡ଼େ ଆକର୍ଷିତ ହୋଇଯିବାର ସମ୍ଭାବନା ଅଛି। କାହିଁକି, ସେକଥା ଏବେ ବୁଝି ହେଉଛି ତ?

ଜଗତର ବିସ୍ମୟ

# ପିରାମିଡ୍

ପାଞ୍ଚ ହଜାର ବର୍ଷ ତଳେ ତଥା ତା' ଆଗରୁ ମଧ୍ୟ ଇଜିପ୍ଟ ବା ମିଶର ଦେଶ ଉପରେ ଯେଉଁ ରାଜାମାନେ ରାଜୁତି କରୁଥିଲେ, ସେମାନଙ୍କୁ ଫାରୋ ବୋଲି କୁହାଯାଉଥିଲା । ଫାରୋ ମରିଗଲେ ତାଙ୍କ ଦେହ ଉପରେ ଏକ ପ୍ରକାର ଔଷଧ ବୋଳି ତାକୁ ଗୋଟିଏ ଶବାଧାର (କଫିନ୍)ରେ ରଖାଯାଉଥିଲା । ସେ ଶବାଧାର ଯେଉଁ କବରରେ ରହୁଥିଲା, ତାହା ଉପରେ ବିଶାଳ ପଥର ଇମାରତ୍ ନିର୍ମାଣ କରା ହେଉଥିଲା । ଏହାହିଁ ପିରାମିଡ୍ । ଏହାର ଭିତ୍ତି ଚୁତୁଷ୍କୋଣ ବିଶିଷ୍ଟ । ଉପରକୁ କ୍ରମେ ଏହାର ଚୁତୁଷ୍କୋଣ ସରୁ ହୋଇ ଗୋଟିଏ ବିନ୍ଦୁରେ ଶେଷ ହୋଇଥାନ୍ତି ।

କାଇରୋ ନଗରୀର ଅଦୂରରେ ତିନୋଟି ବଡ଼ ପିରାମିଡ୍ ଦେଖିବାକୁ ମିଳେ । ତହିଁ ଭିତରେ ସବୁଠୁଁ ବୃହତ୍ ଓ ପୁରାତନ ହେଲା ଫାରୋ ଖୁଫୁଙ୍କ କବର ଉପରେ ନିର୍ମିତ ପିରାମିଡ୍ । ଏ ଗୋଟିକି ମଣିଷ ଦ୍ୱାରା ନିର୍ମିତ୍ ସବୁଠାରୁ ବଡ଼ ଇମାରତ୍ । ଯେତିକି ସ୍ଥାନ ଏହା ମାଡ଼ି ବସିଛି, ତହିଁ ଭିତରେ ରୋମର ସେଣ୍ଟ୍ ପିଟର୍ସ ଗୀର୍ଜା, ଲଣ୍ଡନର ଓ୍ୱେଷ୍ଟମିନ୍‌ଷ୍ଟାର ଗୀର୍ଜା ପାଇଁ ଥାନ ହୋଇଯାନ୍ତା । ୪,୭୦୦ ବର୍ଷ ତଳେ ଏକ ଲକ୍ଷ ଶ୍ରମିକ ଓ ମିସ୍ତ୍ରୀ କୋଡ଼ିଏ ବର୍ଷ କାଳ ଲାଗି ଏ ପିରାମିଡ୍ ନିର୍ମାଣ କରିଥିଲେ ।

ଆଜିର ଜଣେ ଲେଖକ କହିଛନ୍ତି, ଏ ଯୁଗର ସବୁ ବିଜ୍ଞାନ ଓ ବୈଷୟିକ ବିଦ୍ୟା ଖଟାଇ ମଧ୍ୟ ମଣିଷ ଖୁଫୁଙ୍କ ପିରାମିଡ୍ ଭଳି ଇମାରତ୍‌ଟିଏ ବନାଇ ପାରିବ କି ନା ସନ୍ଦେହ ।



# ମୋଜେସ୍‌ଙ୍କ ଅଭିଯାନ



ହଜାର ହଜାର ବର୍ଷ ତଳର କଥା । ମିଶରର ରାଜା ଫାରୋଙ୍କର କନ୍ୟା ନୀଳ ନଦୀରେ ସ୍ନାନ କରୁଥିଲେ । ହଠାତ୍ ସେ ଦେଖିଲେ, ଗୋଟିଏ ପେଡ଼ି ଭାସି ଚାଲିଛି ; ରାଜକନ୍ୟା ତାକୁ ଉଦ୍ଧାର କରି ଦେଖିଲେ ତହିଁ ଭିତରେ ତିନିମାସର ପୁଅ ଛୁଆଟିଏ ।

ସେତେବେଳେ ମିଶରରେ ପ୍ରବାସୀ ଭାବରେ ରହିଥିବା ୟିହୁଦୀମାନଙ୍କ ସଂଖ୍ୟା ବଢ଼ି ଚାଲିଥାଏ । ତେଣୁ ଫାରୋଙ୍କ ହୁକୁମ ଅନୁସାରେ ୟିହୁଦୀ ପରିବାରରେ ପୁଅଟିଏ ଜନ୍ମ ହେବା ମାତ୍ରେ ତାକୁ ତାଙ୍କ ସୈନ୍ୟମାନେ ହତ୍ୟା କରୁଥିଲେ । ପୁଅକୁ ରକ୍ଷା କରିବା ନିମନ୍ତେ କୌଣସି ମାଆ ତାକୁ ନଈରେ ଭସାଇ ଦେଇଛି ବୋଲି ରାଜକନ୍ୟା ବୁଝିଲେ ।

ସେ ପୁଅର ଭଉଣୀ ଦୂରରେ ଥାଇ ସବୁ ଦେଖୁଥିଲା । ସେ ଆସି ବିନେ ରାଜକନ୍ୟାଙ୍କୁ ପଚାରିଲା, "ପିଲାଟି ପାଇଁ ପରିଚାରିକା



"ଦରକାର ?" ରାଜକନ୍ୟା ପିଲାଟିକୁ ପାଳିବାର ଦାୟିତ୍ୱ ସେହି ଝିଅକୁ ଦେଲେ । ଭଉଣୀ ତା' ଛୋଟ ଭାଇକୁ ନିଜ ଘରକୁ ମାଆ ପାଖକୁ ନେଇ ଆସିଲା—କିନ୍ତୁ ପୁଅଟି ଆସିଲା ଖୋଦ୍ ରାଜକନ୍ୟାଙ୍କ ପୋଷ୍ୟପୁତ୍ର ରୂପେ ! ଅତଏବ ସେ ନିର୍ଭୟରେ ବଢ଼ିଲା ।

ୟିହୁଦିମାନଙ୍କ ଉପରେ ମିଶର ବାସୀମାନେ ପ୍ରବଳ ଅତ୍ୟାଚାର କରୁଥିଲେ । ସେମାନଙ୍କୁ କ୍ରୀତଦାସ ରୂପେ ଖଟାଇବା ସଙ୍ଗେ ସଙ୍ଗେ ସାମାନ୍ୟ ଭୁଲ୍ ତ୍ରୁଟି ପାଇଁ ଯନ୍ତ୍ରଣା ବା ମୃତ୍ୟୁଦଣ୍ଡ ଦେଉଥିଲେ । ବାଇବେଲ୍‌ରୁ ଜଣାଯାଏ, ଦିନେ ଏକ ନିର୍ଜନ ସ୍ଥାନରେ ମୋଜେସ୍ ଦେଖିଲେ ଗୋଟିଏ ବୁଦାରେ ନିଆଁ ଜଳୁଛି ଅଥଚ ବୁଦାର କିଛି କ୍ଷତି ହେଉନାହିଁ । ସେହି ନିଆଁରୁ ଆବିର୍ଭୂତ ହେଲେ ଈଶ୍ୱର । ସେ ମୋଜେସ୍‌ଙ୍କୁ କହିଲେ କି ସେ ୟିହୁଦି ଜାତିର ନେତୃତ୍ୱ ନିଅନ୍ତୁ । ଈଶ୍ୱର ମୋଜେସ୍‌ଙ୍କୁ ଏପରି କିଛି ଗୁଣ ଦେଲେ, ଯାହା ଫଳରେ ସେ ଅନ୍ୟମାନଙ୍କ ଭିତରେ ବିଶ୍ୱାସ ଉପୁଜାଇ ପାରିବେ ।

ମୋଜେସ୍ ଫାରୋଙ୍କୁ କହିଲେ କି ତାଙ୍କ ଲୋକଙ୍କୁ ମିଶର ଛାଡ଼ି ଚାଲି ଯିବାପାଇଁ ଅନୁମତି ମିଳୁ । ଫାରୋ କିନ୍ତୁ ଶୁଣିଲେ ନାହିଁ । ମୋଜେସ୍ ଗୋଟାଏ ପରେ ଗୋଟାଏ ଅଦ୍ଭୁତ କାଣ୍ଡ କଲେ । ତାଙ୍କ କହିବା ଅନୁସାରେ ନୀଳ ନଦୀର ପାଣି ରକ୍ତ ହୋଇଗଲା ଦେଶଯାକ ବେଙ୍ଗ, ଝିଣ୍ଟିକା ଓ ଉକୁଣୀରେ ଭର୍ତ୍ତି ହୋଇଗଲା । ଭୀଷଣ ବାତ୍ୟାରେ ଦେଶର ଫସଲ ଧ୍ୱଂସ ହେଲା । ପରେ ପରେ ଦେଖାଦେଲା ମହାମାରୀ । ପୁଣି ମିଶରୀୟ ପରିବାର ସବୁର ପ୍ରଥମ ସନ୍ତାନମାନ ମରିବାକୁ ଲାଗିଲେ ।



ତେବେ ଯାଇ ଫାରୋ ୟିହୁଦିମାନଙ୍କୁ ମିଶର ଛାଡ଼ିଯିବା ପାଇଁ ଅନୁମତି ଦେଲେ ।

ମୋଜେସ୍ ସେମାନଙ୍କୁ ଇସ୍ରାଏଲ ଅଭିମୁଖେ ନେଇଗଲେ । ଆଗରେ ପଡ଼ିଲା ଲୋହିତ ସାଗର । ତା'ର ଜଳରାଶି ଦୁଇଭାଗ ହୋଇ ଯାଇ ମୋଜେସ୍ ଓ ତାଙ୍କ ଲୋକଙ୍କୁ ସେପାରିକୁ ଯିବାକୁ ବାଟ ଦେଲା, କିନ୍ତୁ ପରେ ସେମାନଙ୍କୁ ବାଧ୍ୟ କରି ମିଶର ଫେରାଇ ନେବାକୁ ଆସୁଥିବା ଫାରୋଙ୍କ ସୈନ୍ୟମାନେ ସେ ବାଟରେ ଗୋଡ଼ ଦେବା ମାତ୍ରେ ଜଳରାଶି ସେମାନଙ୍କ ଉପରେ ଉଜାଡ଼ି ପଡ଼ିଲା । ସେମାନଙ୍କର ସଲିଳ ସମାଧି ହେଲା ।

ୟିହୁଦିମାନେ ଇସ୍ରାଏଲ୍‌ରେ ପହଞ୍ଚିଲେ, କିନ୍ତୁ ସେ ଦେଶର ସୀମାନ୍ତରେ ପାଦଦେବା ପୂର୍ବରୁ ମୋଜେସ୍ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ଏହି ବୃତ୍ତାନ୍ତ ଆଂଶିକ ଇତିହାସ ବୋଲି ବିଶ୍ୱାସ କରାଯାଏ । ଏହି ଘଟଣାରୁ ଜନ୍ମନେଲା ଏକ ନୂତନ ଦେଶ ।

ଭାରତର ଇତିହାସ ପ୍ରତି ଦୃଷ୍ଟିପାତ କରାଯାଉ



୧. କେଉଁ ପ୍ରାଚୀନ ନଗରୀର ନାମ ଦୁଇଟି ନଈର ନାମରୁ ଆସିଛି ?
 (କ) ସେ ଦୁଇ ନଈର ନାମ କ'ଣ ?
 (ଖ) କେଉଁ ବୃହତ୍ତର ନଦୀ ସହ ସେ ଦୁହେଁ ଯୁକ୍ତ ?
 (ଗ) ସେ ନଗରୀ କାହିଁକି ବିଖ୍ୟାତ ?

୨. କେଉଁ ଭାରତ-ବିଜେତା ତାଙ୍କ ମାତୃବଂଶ ଅନୁସାରେ ନିଜ ପରିଚୟ ବହନ କରୁଥିଲେ ?
 (କ) କେବେ ସେ ଭାରତକୁ ଆସିଥିଲେ ?
 (ଖ) ସେ ପ୍ରତିଷ୍ଠା କରିଥିବା ବଂଶର ନାମ କ'ଣ ?
 (ଗ) ତାଙ୍କର ସବୁଠୁଁ ବିଖ୍ୟାତ ପୂର୍ବପୁରୁଷଙ୍କ ନାମ କ'ଣ ?

୩. ଆକବରଙ୍କ ରାଜୁତିର ବିବରଣୀ ଦେଇଥିବା ବହିର ନାମ କ'ଣ ?
 (କ) କିଏ ତା'ର ଲେଖକ ?
 (ଖ) ସେ ଲେଖକଙ୍କର ଅନ୍ୟ ବହିର ନାମ କ'ଣ ? ପ୍ରଥମ ବହିଠୁଁ ତା'ର ପାର୍ଥକ୍ୟ କ'ଣ ?

୪. ପ୍ରାଚୀନ କାଳରେ କେଉଁ କେଉଁ ବିଖ୍ୟାତ ରାଜବଂଶ ଦକ୍ଷିଣ ଭାରତ ଉପରେ ରାଜୁତି କରୁଥିଲେ ?

# ବିଜ୍ଞାନ, ଆବିଷ୍କାର, ଉଦ୍ଭାବନ ତଥ୍ୟ

୧. ନିଅନ୍ ଆଲୁଅର ଉଦ୍ଭାବନ କେବେ ଓ କାହାଦ୍ୱାରା ହୋଇଥିଲା ?

୨. ଗୋଟାଏ ବଜ୍ରପାତରେ କେତେ ବିଦ୍ୟୁତ୍ ଖର୍ଚ୍ଚ ହୁଏ ?

୩. ବିଶ୍ୱଜଗତର ବୟସ କେତେ ?

୪. ଦୂରବୀକ୍ଷଣର ଉଦ୍ଭାବନ କେବେ ଓ କାହାଦ୍ୱାରା ହୋଇଥିଲା ?

୫. ପୃଥିବୀଠାରୁ ସୂର୍ଯ୍ୟ ସବୁବେଳେ ସମାନ ଦୂରତ୍ୱରେ ଥାଏ କି ?

୬. ଉଡ଼ନ୍ତା ଥାଳିଆ କେବେ କେବେ ବେଶି ସଂଖ୍ୟାରେ ଦେଖାଯା'ନ୍ତି କି ?

୭. କେଉଁ ଦେଶରେ ସର୍ବାଧିକ ସଂଖ୍ୟକ ସମ୍ବାଦପତ୍ର ପ୍ରକାଶ ପାଏ ?

୮. ମଣିଷ ହାତର ଏକ ବର୍ଗଇଞ୍ଚ ସ୍ଥାନରେ କେତେ ଜନ୍ତୁ ରହିପାରେ ?

୯. ପାଣି ନ ପିଇ ଓଟଠାରୁ ଅଧିକ କାଳ ରହିପାରେ କେଉଁ ପ୍ରାଣୀ ?

୧୦. କେଉଁ ପ୍ରାଣୀର ଗନ୍ଧ ମାଇଲଏ ଦୂରରୁ ବାରିହୁଏ ?

(........ଉତ୍ତର ପୃ : ୮୬ରେ)




୧. ସବୁଠାରୁ ଅଧିକ ଲୋକ କେଉଁ ଭାରତୀୟ ପୋଥି ପଢ଼ନ୍ତି ?

(କ) ସେ ପୋଥିରେ କେତେ ଅଧ୍ୟାୟ ରହିଛି ?

(ଖ) ସେ ପୋଥି କେଉଁ ବହିର ଅଂଶ ବିଶେଷ ?

(ଗ) ତା'ର ଲେଖକ କିଏ ?

୨. କେଉଁ ବିଖ୍ୟାତ ଭାରତୀୟ ନାଟ୍ୟକାର ଓ କବିଙ୍କ ମୂଳ ନାମ ଅଜ୍ଞାତ ?

(କ) ସେ ମୂଳ ନାମ ବଦଳରେ ଅନ୍ୟ ନାମ ନେଲେ କାହିଁକି ?

(ଖ) ତାଙ୍କ ରଚିତ ନାଟକ ସବୁ କ'ଣ ?

(ଗ) ତାଙ୍କ ରଚିତ କାବ୍ୟ ସବୁ କ'ଣ ?

୩. ଗୋଟିଏ ପ୍ରାଚୀନ ବହି ଅନୁସାରେ ଜଣେ ନାରୀର ଅଭିଶାପରେ ଏକ ସହର ଜଳିଯାଇଥିଲା । କେଉଁ ସହର ?

(କ) ସେ ନାରୀ କିଏ ?

(ଖ) ସେ ବହିର ନାମ କ'ଣ ? ଲେଖକ କିଏ ? କେଉଁ ଭାଷାରେ ଓ କେବେ ତାହା ଲେଖା ହୋଇଥିଲା ?

.........ଉତ୍ତର ପୃ : ୮ରେ

### ଗୋଟିଏ ଶବ୍ଦ : ଭାରତର ସବୁ ଭାଷାରେ !

ଓଡ଼ିଆ : ଛାତ୍ର ; ଅସମିୟା : ଛାତ୍ର ; ବଙ୍ଗଳା : ଛାତ୍ର ; ଇଂରାଜୀ : ଷ୍ଟୁଡେଣ୍ଟ୍ ; ଗୁଜରାଟି : ବିଦ୍ୟାର୍ଥୀ ; ହିନ୍ଦି : ଛାତ୍ର ; କନ୍ନଡ଼ : ବିଦ୍ୟାର୍ଥୀ ; କାଶ୍ମୀରୀ : ଶାଗିର୍ଦ୍ଦ ; ମାଲୟାଲମ : ବିଦ୍ୟାର୍ଥୀ ; ମରାଠି : ବିଦ୍ୟାର୍ଥୀ ; ପଞ୍ଜାବୀ : ବିଦ୍ୟାର୍ଥୀ ; ସଂସ୍କୃତ : ବିଦ୍ୟାର୍ଥୀନ୍ ; ସିନ୍ଧି : ଶାଗିର୍ଦ୍ଦ ; ତାମିଲ୍ : ମାନବନ ; ତେଲୁଗୁ : ବିଦ୍ୟାର୍ଥୀ ; ଉର୍ଦ୍ଦୁ : ତାଲିବଲ୍ମ୍ ।

## ତୁମେ କ'ଣ ଜାଣିଛ

* ଯେ ଆର୍ଯ୍ୟମାନେ ଭାରତ ବାହାରୁ ଭାରତ ଭିତରକୁ ଆସିଥିଲେ ?
* ଯେ କଲମ୍ବସ୍‌ହିଁ ଆମେରିକାରେ ପହଞ୍ଚିଥିବା ପ୍ରଥମ ବିଦେଶୀ ?
* ଯେ ପେଟରେ ମୁଣିଟିଏ ଥିବା ଏକମାତ୍ର ପ୍ରାଣୀ ହେଉଛି କଙ୍ଗାରୁ ?

ନା !

* ଏ ତତ୍ତ୍ୱ ଆନ୍ଦାଜ ମାତ୍ର । ଏହାର କୌଣସି ପ୍ରମାଣ ନାହିଁ ।
* ନା, ନରୱେରୁ ଯାଇ ଲିଫ୍ ଏରିକ୍ ସନ୍ ୧୦୦୦ ଖ୍ରୀଷ୍ଟାବ୍ଦରେ ଆମେରିକାରେ ପହଞ୍ଚିଥିଲେ ।
* ନା, କଙ୍ଗାରୁ ଭଳି ପେଟରେ ମୁଣିଥିବା ପ୍ରାଣୀ ଆହୁରି ଅଛନ୍ତି, ଯଥା କୋଆଲା ଭାଲୁ, ଅପୋସାମ୍ ଏବଂ ଓମ୍ବାଟ୍ ।

## ଅନ୍ୟାନ୍ୟ ଉତ୍ତର

### ସେ କିଏ ?

ଳିଦାସ । କିମ୍ବଦନ୍ତୀ ଅନୁସାରେ ସେ
ନ୍ତ ସରଳ ମଣିଷ ଥିଲେ । ଜଣେ
କୁମାରୀ ସବୁଠାରୁ ବିଜ୍ଞ ଯୁବକକୁ ବିଭା
ହେବ ବୋଲି ଜିଦି କରି ଜଣକ ପରେ
ଣ ପ୍ରାର୍ଥୀଙ୍କୁ ନାପସନ୍ଦ କରନ୍ତେ କେତେ-
ଣ ହତାଶ ପଣ୍ଡିତ ପ୍ରତିଶୋଧ ନେବା
ନ୍ତେ ବାହାରିଲେ । ସରଳ କାଳି-
ଙ୍କୁ (ତାଙ୍କ ମୂଳନାମ ଜଣାନାହିଁ) କପଟ
ବୋଲି ଭାବି ସେମାନେ ତାଙ୍କୁ ନେଇ
କୁମାରୀଙ୍କୁ ପ୍ରତାରିତ କରି ବିଭା କରାଇ-
ଲେ । ଶୀଘ୍ର ରାଜକୁମାରୀ ସେକଥା
ପାରି ତାଙ୍କୁ ଅପମାନ ଦେଲେ ।
ପର ବାକି ଅଂଶ ତ ଜାଣିଛ ।

### ଇତିହାସ

ବାରାଣସୀ (କ) ବରୁଣ ଓ ଅସୀ
) ଗଙ୍ଗା (ଗ) ବିଶ୍ୱନାଥ ନାମରେ
ତ ଶିବଙ୍କ ମନ୍ଦିର ଯୋଗୁଁ ।

ବାବର । ସେ ତାଙ୍କ ମଙ୍ଗୋଲ ମାତୃ-
ଅନୁସାରେ ମୋଗଲ ବୋଲି ପରିଚିତ
୧୫୨୬ ରେ (ଖ) ମୋଗଲ ବଂଶ
ଚେଙ୍ଗିଜ୍ ଖାଁ ।

ଆକବରନାମା (ଢ) ଅବୁଲ ଫଜଲ
(ଖ) ଆଇନ୍-ଇ-ଆକ୍‌ବରୀ । ଏ ଦ୍ୱିତୀୟ
ବହିଟି ଆକବରଙ୍କ ଶାସନ କାଳର ପରି-
ସଂଖ୍ୟାନ ଓ ତଥ୍ୟକୁ ନେଇ ଲେଖା ।
୪. ଗ୍ରୀକ, ପାର୍ଶ୍ୟ ଓ ତୁର୍କ ।

### ବିଜ୍ଞାନ

୧. ଫରାସୀ ବୈଜ୍ଞାନିକ ଜର୍ଜ କ୍ଲଡ୍ ।
୧୮୧୦ ମସିହାର ଡିସେମ୍ବର ୩ ତା : ରେ
ପ୍ୟାରିସ୍ ମୋଟର ପ୍ରଦର୍ଶନୀରେ ତାଙ୍କ
ଉଦ୍‌ଭାବିତ ଆଲୋକ ପ୍ରଥମେ ଜନ-
ସାଧାରଣ ଦେଖିଲେ ।

୨. ୭,୨୫୦ ନିୟୁତ କିଲୋୱାଟ ବିଦ୍ୟୁତ
ଶକ୍ତି ।
୩. ୧୫ ରୁ ୧୭ ବିଲିଅନ୍ ବର୍ଷ ।

୪. ମିଡ୍‌ଲବାର୍ଗର ଜଣେ ଚଷମା ଦୋକାନୀ
ହାନ୍‌ସ୍ ଲିପାର୍‌ସେ ଏହାର ଉଦ୍‌ଭାବକ
ଭାବେ ପରିଚିତ । କିନ୍ତୁ ଅସଲ ଉଦ୍‌ଭାବକ
ଜାନ୍‌ସେନ୍ ଲେନ୍‌ସ୍ ନେଇ ଖେଳୁଥିବା ତାଙ୍କ
ଦୋକାନର ଚାକର ପିଲାଟିଏ ।

୫. ନା, ଶୀତ କାଳରେହିଁ ସୂର୍ଯ୍ୟ ପୃଥିବୀର
ନିକଟତର ହୋଇଥାଏ । ବ୍ୟବଧାନ ତିନି
ନିୟୁତ ମାଇଲ୍ କମିଯାଏ ।
୬. କାରଣ ଯାହା ହେଉନା କାହିଁକି,
ଶୁକ୍ରଗ୍ରହ ପୃଥିବୀର ନିକଟତର ହେଲେ ବେଳେ
ଅଧିକ ସଂଖ୍ୟାରେ ଉଡ଼ନ୍ତା ଥାଳିଆର
ଖବର ମିଳେ ।
୭. ଆମେରିକା ଯୁକ୍ତରାଷ୍ଟ୍ର । ପୃଥିବୀର
ସମୁଦାୟ ସମ୍ବାଦ ପତ୍ରର ଅଧାଅଧି ଆମେ-
ରିକା ଓ କାନାଡ଼ାରୁ ପ୍ରକାଶିତ ହୁଅନ୍ତି ।
୮. ୭୨ ଫୁଟ ପର୍ଯ୍ୟନ୍ତ ।
୯. ଜିରାଫ୍
୧୦. ଷ୍ଟାର୍କ୍‌ର ଗନ୍ଧ

### ସାହିତ୍ୟ

୧. ଶ୍ରୀମଦ୍ ଭଗବତ୍ ଗୀତା । ଏହା ଶ୍ରୀକୃଷ୍ଣ
ଅର୍ଜୁନଙ୍କ ଭିତରେ ପ୍ରଶ୍ନୋତ୍ତର ।
(କ) ଅଠର (ଖ) ମହାଭାରତ (ଭୀଷ୍ମ
ପର୍ବ) (ଗ) ବ୍ୟାସ ।

୨. କାଳିଦାସ (କ) ଦେବୀ କାଳୀଙ୍କ
ବରରେ ସେ ପଣ୍ଡିତ ପାଲଟିଗଲେ ବୋଲି ।
(ଖ) ମାଳବିକାଗ୍ନିମିତ୍ର, ବିକ୍ରମୋର୍ବଶୀୟମ୍, ଅଭିଜ୍ଞାନ ଶକୁନ୍ତଳମ୍ ।
(ଗ) ରଘୁବଂଶମ୍, କୁମାର ସମ୍ଭବମ୍
ମେଘଦୂତମ୍ ।

୩. ମହୁରିଆ (କ) କଳିଙ୍ଗ (ଖ) ସିଲ-
ପଦିକାରମ୍ ଶଙ୍କୁମାର ଇଲାଙ୍ଗୋ
ଆଡିଗଲ୍‌ଙ୍କ ଦ୍ୱାରା ପ୍ରାୟ ଦୁଇ ହଜାର
ବର୍ଷ ତଳେ ଲିଖିତ ।

# ପରିବ୍ରାଜକ



ତୁର୍ଫାନ୍‌ରେ ସେତେବେଳେ ବୌଦ୍ଧଧର୍ମ ଓ ସଂସ୍କୃତିର ବିଶେଷ ଚର୍ଚ୍ଚା ହେଉଥିଲା । (ସହରଟି ଅଦ୍ୟାବଧି ଅଛି; କିନ୍ତୁ ତା'ର ଏ ବିଶେଷତ୍ୱ ଆଉ ନାହିଁ ।)

ସେ ଭାରତରେ ପହଞ୍ଚି, ବୁଦ୍ଧଦେବଙ୍କ ଦେଶକୁ ଆସିଥିବା ଯୋଗୁଁ ଯେତିକି ପୁଲକିତ ହେଲେ, ଭାରତର ସଂସ୍କୃତି ଓ ଐଶ୍ୱର୍ଯ୍ୟ ଦେଖି ସେତିକି ମୁଗ୍ଧ ହେଲେ । ସେତେବେଳେ ଭାରତର ଏକ ବଡ଼ ଅଂଶ ଉପରେ ରାଜୁତି କରୁଥିଲେ ହର୍ଷବର୍ଦ୍ଧନ ।

ଜବାହରଲାଲ୍ ନେହେରୁ ତାଙ୍କ ବିଶ୍ୱ ଇତିହାସରେ ହୁଏନ୍ ସାଂଙ୍କ ସମ୍ପର୍କରେ ଲେଖିଛନ୍ତି : ସେ ଥିଲେ ଜଣେ ନୈଷ୍ଠିକ ବୌଦ୍ଧ । ବୁଦ୍ଧଙ୍କ ସ୍ମୃତିରେ ପବିତ୍ର ସ୍ଥାନମାନ ଦେଖିବା ଏବଂ ସେ ସମ୍ପର୍କୀୟ ଗଳ୍ପମାନ ସଂଗ୍ରହ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । ଗୋବି ମରୁଭୂମି ଅତିକ୍ରମ କରି, ତାସ୍‌କେଣ୍ଟ୍, ସମରକନ୍ଦ, ବାଲ୍‌ଖ୍, ଖୋଟାନ୍ ଓ ୟାର୍‌କନ୍ଦ ଭଳି ସେତେବେଳର ବିଖ୍ୟାତ ସହରମାନ ଦର୍ଶନ କରି ସେ ଆସିଥାନ୍ତି । ସେ ଯେ ଖାଲି ଭାରତ ସାରା ବୁଲିଥିଲେ, ତାହା ନୁହେଁ, ସମ୍ଭବତଃ ସିଂହଳ ବି ଯାଇଥିଲେ । ତାଙ୍କ ଭ୍ରମଣ କାହାଣୀରେ ଆମେ ପଢ଼ିବାକୁ ପାଇଥାଉଁ କେତେ କେତେ ମୂଲକର ଅବିକଳ ବର୍ଣ୍ଣନା, ଭାରତର ଭିନ୍ନ ଭିନ୍ନ ଅଞ୍ଚଳର ଲୋକମାନଙ୍କ ଚରିତ୍ରର ସୁନ୍ଦର ଚିତ୍ରଣ—ଯାହା ଆଜିଯାଏ ନିର୍ଭୁଲ ମନେ ହୁଏ—ସେ ଶୁଣିଥିବା କେତେ ଅଜବ କାହାଣୀ ଏବଂ ବୁଦ୍ଧ ଓ ବୋଧିସତ୍ତ୍ୱଙ୍କ ସମ୍ପର୍କୀୟ କେତେ ଆଶ୍ଚର୍ଯ୍ୟ ଘଟଣା···

ସେ ଭାରତରେ, ବିଶେଷତଃ ପାଟଳିପୁତ୍ର ପାଖରେ ଥିବା ନାଳନ୍ଦାର ମହାନ୍ ବିଶ୍ୱବିଦ୍ୟାଳୟରେ ଅନେକ ବର୍ଷ ଅତିବାହିତ କରିଥିଲେ । ନାଳନ୍ଦା ଥିଲା ବୁଦ୍ଧବିହାର ଓ ବିଶ୍ୱବିଦ୍ୟାଳୟର ସମାହାର । ପ୍ରାୟ ଦଶହଜାର ଶିକ୍ଷାର୍ଥୀ ଓ ସନ୍ନ୍ୟାସୀ ସେଠାରେ ରହୁଥିଲେ । ସେତେବେଳେ ବ୍ରାହ୍ମଣମାନଙ୍କର ସବୁଠାରୁ ବଡ଼ ଅଧ୍ୟବସାୟ କେନ୍ଦ୍ର, ଯେପରି ବାରାଣସୀ ଥିଲା, ସେହିପରି ବୌଦ୍ଧମାନଙ୍କର ଥିଲା ନାଳନ୍ଦା ।

ଅତୀତ
ପ୍ରତି ଦୃଷ୍ଟିପାତ



୧. ଦିଲ୍ଲୀର ଶେଷ ହିନ୍ଦୁ ରାଜା ଥିଲେ କିଏ ?
(କ) ତାଙ୍କ ସମ୍ପର୍କ କେଉଁ ରୋମାଣ୍ଟିକ କାହାଣୀ ଶୁଣାଯାଏ ?
(ଖ) କେଉଁ ହିନ୍ଦୁରାଜା ତାଙ୍କର ଶତ୍ରୁ ହେଲେ ?
(ଗ) ଏ ଶତ୍ରୁଙ୍କର ପରିଣତି କ'ଣ ହେଲା ?

୨. ଦିଲ୍ଲୀର କେଉଁ ଶାସକ ମୃତ୍ୟୁଶଯ୍ୟାରେ ନିଜ କନ୍ୟାକୁ ଉତ୍ତରାଧିକାରୀ ରୂପେ ବାଛିଲେ ?
(କ) ସେ କନ୍ୟାଙ୍କ ନାମ କ'ଣ ?
(ଖ) ସେ କନ୍ୟା ବିଭା ହେଲେ କାହାକୁ ?
(ଗ) ସେ ଦମ୍ପତିଙ୍କ ଭାଗ୍ୟରେ କ'ଣ ଥିଲା ?

୩. କେଉଁ ବିଦେଶୀ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଦିଲ୍ଲୀ ଆକ୍ରମଣ କରି ୩୦,୦୦୦ ଲୋକଙ୍କୁ ହତ୍ୟା କଲା ?
(କ) ସେତେବେଳେ ଦିଲ୍ଲୀର ଶାସକ ଥିଲେ କିଏ ?
(ଖ) ସେ ଆକ୍ରମଣକାରୀ ନେଇଯାଇଥିବା ବିଖ୍ୟାତ ସିଂହାସନର ନାମ କ'ଣ ?
(ଗ) ଅନ୍ୟ କ'ଣ ସବୁ ସେ ନେଇଗଲେ ?

# ସାଧାରଣ ଜ୍ଞାନ

୧. ୧୯୮୮ରେ ଭାରତର ଗୋଟିଏ ରେଳ ଷ୍ଟେସନ୍ କୋଠାର ଶତବାର୍ଷିକୀ ପାଳିତ ହେଲା । ସେ କୋଠାର ନାମ କ'ଣ ? ସେ ନାମର ତାତ୍ପର୍ଯ୍ୟ କ'ଣ ?
୨. ପାଶ୍ଚାତ୍ୟର ଜଣେ ମନୀଷୀଙ୍କୁ 'ହେମଲକ' ନାମକ ପାନୀୟ ପିଇବାକୁ ଦିଆଯାଇଥିଲା । ସେ ମନୀଷୀ କିଏ ? ସେ ପାନୀୟ ପିଇ ତାଙ୍କର ହେଲା କ'ଣ ?
୩. ସ୍ୱାଧୀନତା ପୂର୍ବରୁ ଘାନାର ନାମ କ'ଣ ଥିଲା ?
୪. "ଜାତୀୟବାଦୀ ଚୀନ୍" ନାମରେ କଥିତ ଭୂଖଣ୍ଡର ଅସଲ ନାମ କ'ଣ ?
୫. ବେନେଲକ୍ସ ବୋଇଲେ କେଉଁ ସବୁ ଦେଶକୁ ବୁଝାଏ ?
୬. ପୃଥିବୀଠାରୁ ଚନ୍ଦ୍ରର ଦୂରତା କେତେ ?
୭. ମହାଜାଗତିକ ବର୍ଷ ବୋଇଲେ କ'ଣ ବୁଝାଏ ?
୮. ପୃଥିବୀର ବୃହତ୍ତମ ଦେଶ କିଏ ?
୯. କ୍ଷୁଦ୍ରତମ ଦେଶ କିଏ ?
୧୦. ଗ୍ରହମଣ୍ଡଳ ବୋଇଲେ କ'ଣ ?

(………ଉତ୍ତର ପୃ : ୮ରେ)




୧. କେଉଁ ମହାନ୍ ସଂସ୍କୃତ ନାଟ୍ୟକାରଙ୍କ ଗ୍ରନ୍ଥମାନ ମାତ୍ର ୧୯୧୨ ମସିହାରେ ଆବିଷ୍କୃତ ହେଲା ?

(କ) କିଏ, କେଉଁଠାରେ ସେସବୁ ଆବିଷ୍କାର କଲେ ?

(ଖ) ସେସବୁ ଗ୍ରନ୍ଥର ସଂଖ୍ୟା କେତେ ?

୨. ଯମ ଆଗରେ ଠିଆ ହୋଇ ତାଙ୍କୁ ମୃତ୍ୟୁର ରହସ୍ୟ ପଚାରିଥିଲେ କେଉଁ ବାଳକ ?

(କ) ସେ ଗଳ୍ପ କେଉଁ ବହିରେ ପଢ଼ିବାକୁ ମିଳେ ?

(ଖ) ସେ ବହି ଯେଉଁ ନାମରେ ପରିଚିତ, ତା'ର ଅର୍ଥ କ'ଣ ?

୩. ବାଲ୍ମୀକିଙ୍କ ରାମାୟଣ ଛଡ଼ା ଦୁଇଟି ମୁଖ୍ୟ ରାମାୟଣର ନାମ କ'ଣ ?

୪. କେଉଁ ପ୍ରାଚୀନ ରାଜା ଏକ ଗୁଚ୍ଛ ଚମତ୍କାର ପ୍ରାଚୀନ କାହାଣୀର ନାୟକ ?

(କ) ସେ ଗଳ୍ପଗୁଚ୍ଛର ନାମ କ'ଣ ?

(ଖ) ସେ ଗଳ୍ପଗୁଚ୍ଛର ଉତ୍ସ କ'ଣ ?

........ଉତ୍ତର ପୃ : ୮ରେ

**ପ୍ରତ୍ୟେକ ଭାରତୀୟ ଭାଷାରେ ଗୋଟିଏ ଶବ୍ଦ :**

**ଓଡ଼ିଆ :** ମଣିଷ ; **ଅସମିୟା :** ମନୁହ ; **ବଙ୍ଗଳା :** ମାନୁଷ ; **ଇଂରାଜୀ :** ମ୍ୟାନ ; **ଗୁଜରାଟି :** ମଣସ ; **ହିନ୍ଦି :** ଆଦ୍ମୀ ; **କନ୍ନଡ଼ :** ମନୁଷ୍ୟ ; **କାଶ୍ମୀରୀ :** ମହନ୍ୟୁ ; **ମାଲୟାଲମ :** ମନୁଷ୍ୟନ୍ ; **ମରାଠି :** ମାନୁଷ୍ ; **ପଞ୍ଜାବୀ :** ମନୁଖ ; **ସଂସ୍କୃତ :** ମାନବ ; **ସିନ୍ଧି :** ମାନ୍ହୁନ୍ ; **ତାମିଲ୍ :** ମନିଦନ୍ ; **ତେଲୁଗୁ :** ମନିଷି ; **ଉର୍ଦ୍ଦୁ :** ଆଦ୍ମୀ ।

## ଆପଣ ବିଶ୍ୱାସ କରନ୍ତି କି—

୧. ଯେ ପୁରା ରାମାୟଣ ବାଲ୍ମୀକି ଲେଖିଥିଲେ ?
୨. ଯେ ଫ୍ରାଙ୍କେନ୍‌ଷ୍ଟାଇନ୍ ଗୋଟିଏ ଭୟଙ୍କର ଦାନବ ?
୩. ଯେ ଡିନୋସାର ସଂସାରର ସବୁଠୁଁ ବଡ଼ ପ୍ରାଣୀ ?

ନା !

୧. ରାମାୟଣର ଉତ୍ତରକାଣ୍ଡ (ସୀତାଙ୍କ ପାତାଳ ପ୍ରବେଶ) ଅନ୍ୟ କାହାରି ଲେଖା । ତେବେ ସେ ବି ଜଣେ ବଡ଼ କବି ।
୨. ମେରୀ ଶେଲିଙ୍କ ଲିଖିତ ଉକ୍ତ ନାମର ଉପନ୍ୟାସରେ ଫ୍ରାଙ୍କେନ୍‌ଷ୍ଟାଇନ୍ ଜଣେ ଗବେଷକଙ୍କ ନାମ । ସେ ଗୋଟିଏ ରାକ୍ଷସ ତିଆରି କରିଥିଲେ, ଯିଏକି ତାଙ୍କୁ ମାରିଦେଲା । କାଳକ୍ରମେ ଲୋକେ ଫ୍ରାଙ୍କେନ୍‌ଷ୍ଟାଇନ୍ ବୋଇଲେ ଏହି ରାକ୍ଷସକୁ ବୁଝାଇଲେ ।
୩. ଡିନୋସାର ନୁହେଁ, ସଂସାରର ସବୁଠାରୁ ବଡ଼ ପ୍ରାଣୀ ନୀଳ ତିମି । ଏହାର ଦୈର୍ଘ୍ୟ ୩୦ ମିଟର ଓ ଓଜନ ୧୭୫ ଟନ ପର୍ଯ୍ୟନ୍ତ ହୋଇଥାଏ ।

# ଉତ୍ତରମାଳା

## ସେ କିଏ ?

। ରାମକୃଷ୍ଣ ପରମହଂସ ।

## ଇତିହାସ

. ପୃଥ୍ୱୀରାଜ ଚୌହାନ
କ) ସଂଯୁକ୍ତାଙ୍କ ସହ ତାଙ୍କର ନାଟକୀୟ ବାହ
ଖ) ସଂଯୁକ୍ତାଙ୍କ ପିତା, କନୌଜର ରାଜା ୟଚନ୍ଦ୍ର ।
ଗ) ଜୟଚନ୍ଦ୍ର ମହମ୍ମଦ ଘୋରୀଙ୍କୁ ଦିଲ୍ଲୀ କ୍ରମଣ କରିବାକୁ ପ୍ରବର୍ତ୍ତାଇଲେ । ରୀଙ୍କୁ ପୃଥ୍ୱୀରାଜ ପରାଜିତ ଓ ବନ୍ଦୀ ଲେ, କିନ୍ତୁ ଛାଡ଼ି ଦେଲେ । ୧୧୯୨ ସିହାରେ ଘୋରୀ ପୁଣି ଦିଲ୍ଲୀ ଆକ୍ରମଣ ରି ପୃଥ୍ୱୀରାଜଙ୍କୁ ପରାସ୍ତ କଲେ । ପୃଥ୍ୱୀରାଜ ଦ୍ଧ କ୍ଷେତ୍ରରେ ପ୍ରାଣ ଦେଲେ । କିନ୍ତୁ ରବର୍ତ୍ତୀ ଘୋରୀ ଜୟଚନ୍ଦ୍ରଙ୍କୁ ହତ୍ୟା କରି ନୌଜ ଅଧିକାର କଲେ ।
. ଇଲ୍‌ତୁତ୍‌ମିସ୍
କ) ରଜିୟା ସୁଲ୍‌ତାନା ।
ଖ) ଆଲ୍‌ତୁନିୟା ନାମକ ଜଣେ ଅମାତ୍ୟଙ୍କ ନେତୃତ୍ୱରେ ସଭାସଦ୍‌ମାନେ ରଜିୟାଙ୍କ ରୁଦ୍ଧରେ ବିଦ୍ରୋହ କଲେ । ରଜିୟା କିନ୍ତୁ ଆଲ୍‌ତୁନିୟାଙ୍କ ହୃଦୟ ଜୟ କରି ତାଙ୍କୁ ହ ହେଲେ ।
ଗ) ବିଦ୍ରୋହୀ ସଭାସଦ୍‌ମାନେ ଉଭୟଙ୍କୁ ତ୍ୟା କଲେ ।

୩. ପାରସ୍ୟର ନାଦିର ଶାହ୍ ।
(କ) ମୋଗଲ ବଂଶର ମହମ୍ମଦ ଶାହ୍ ।
(ଖ) ମୟୂର ସିଂହାସନ ।
(ଗ) କୋହିନୂର ହୀରା । ମୋଗଲ ରାଜା ତାକୁ ନିଜ ପଗଡ଼ି ଭିତରେ ଲୁଚାଇ ରଖିଥିଲେ । ନାଦୀରଶାହ ପଗଡ଼ି ବଦଳାଇବା ବାହାନାରେ ହୀରାସମେତ ମୋଗଲ ରାଜାଙ୍କ ପଗଡ଼ିଟି ନେଇଗଲେ ।

## ବିଜ୍ଞାନ

୧. ବୋମ୍ବେର ଭିକ୍ଟୋରିଆ ଟର୍ମିନାସ୍ । ମହାରାଣୀ ଭିକ୍ଟୋରିଆଙ୍କ ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷ୍ୟେ ଏହା ନିର୍ମିତ ହୋଇଥିଲା ।
୨. ସକ୍ରେଟିସ୍ । 'ହେମ୍‌ଲକ୍' ବିଷାକ୍ତ ପାନୀୟ । ତାଙ୍କ ପ୍ରତି ତାହା ପିଇ ମରିବାର ଦଣ୍ଡାଦେଶ ହୋଇଥିଲା ।
୩. ଗୋଲ୍‌ଡ୍ କୋଷ୍ଟ,
୪. ତାଇଓ୍ୱାନ୍ ବା ଫର୍ମୋଜା
୫. ବେଲ୍‌ଜିଅମ୍, ନେଦାରଲାଣ୍ଡ୍ ଓ ଲୁକ୍ସେମ୍‌ବାର୍ଗ ।
୬. ୧୩୮,୮୫୫ ମାଇଲ୍ ।
୭. ଆମ ଗ୍ରହମଣ୍ଡଳର କେନ୍ଦ୍ର ଚତୁର୍ଦ୍ଦିଗରେ ସୂର୍ଯ୍ୟ ପ୍ରତି ସେକେଣ୍ଡ୍‌ରେ ୨୫୦ କି.ମି. ବେଗରେ ଗତି କରି ୨୫୦୦ ଲକ୍ଷ ବର୍ଷରେ ଥରେ ବୁଲି ଆସେ । ଏହି ସମୟକୁ ମହାଜାଗତିକ ବର୍ଷ କୁହାଯାଏ ।
୮. ରୁଷିଆ ।
୯. ଭାଟିକାନ୍ ନଗରୀ (ପୋପ୍‌ଙ୍କ ଅଧୀନ)
୧୦. ପରସ୍ପର ମାଧ୍ୟାକର୍ଷଣ ଶକ୍ତି ଦ୍ୱାରା ଗୁଚ୍ଛା ବିଶାଳ ନକ୍ଷତ୍ର ପୁଞ୍ଜ ।

## ସାହିତ୍ୟ

୧. ଭାସ । ଖ୍ରୀଷ୍ଟପୂର୍ବ ଷଷ୍ଠ ବା ପଞ୍ଚମ ଦଶକର ନାଟ୍ୟକାର ।
(କ) କେରଳାରେ ପଣ୍ଡିତ ଗଣପତି ଶାସ୍ତ୍ରୀ ଆବିଷ୍କାର କଲେ ।
(ଖ) ସଂଖ୍ୟାରେ ତେର ।
୨. ନଚିକେତା ।
(କ) ଗୋଟିଏ ଉପନିଷଦରେ,
(ଖ) ଉପନିଷଦର ଆକ୍ଷରିକ ଅର୍ଥ ହେଲା ପାଖରେ ବସିବା । ଭିତର ଅର୍ଥ : ଯେଉଁ ଶିଷ୍ୟ ଗୁରୁଙ୍କ ପାଖରେ ବସିବା ଭଳି ଯୋଗ୍ୟତା ରଖେ, ତାକୁହିଁ ସେ ଜ୍ଞାନ ଦିଆଯାଏ ।
୩. ତାମିଲ୍ ଭାଷାର କମ୍ବ ରାମାୟଣ ଓ ହିନ୍ଦିରେ ତୁଳସୀଦାସଙ୍କ ଶ୍ରୀରାମଚରିତମାନସ
୪. ରାଜା ବିକ୍ରମାଦିତ୍ୟ ।
(କ) ବେତାଳ ପଞ୍ଚବିଂଶତି ।
(ଖ) କଥାସରିତ୍ ସାଗର ।

## ପ୍ରାଚୀନ ସାହିତ୍ୟର କାହାଣୀ

# ସୁବର୍ଣ୍ଣ ନୂପୁର-୨



(କାହାଣୀ ଏଯାବତ୍): ସମୃଦ୍ଧ ପୁମ୍ପୁହର ନଗରୀର ବଣିକ-ପୁତ୍ର କୋଭଲନଙ୍କ ସହ ସୁନ୍ଦରୀ କନଗୀଙ୍କ ବିବାହ ହେଲା। ସେହି ନଗରୀର ନର୍ତ୍ତକୀ ମାଧବୀ ରାଜାଙ୍କ ଆଗରେ ତାଙ୍କର ପ୍ରଥମ ନୃତ୍ୟ ପରିବେଷଣ କଲେ।

ମାଧବୀଙ୍କ ନୃତ୍ୟ ଏତେ ଚମତ୍କାର ହେଲା ଯେ ରାଜା ଓ ସମ୍ଭ୍ରାନ୍ତ ଦର୍ଶକମଣ୍ଡଳୀ ପ୍ରଶଂସାରେ ଶତମୁଖ ହେଲେ। କରତାଳି ଧ୍ୱନିରେ ପ୍ରେକ୍ଷାଳୟ ପ୍ରକମ୍ପିତ ହେଲା। ଦର୍ଶକମାନେ ତୃପ୍ତ ହୋଇ ଚାଲିଗଲେ।





ପ୍ରଥା ଅନୁସାରେ ସବୁଜ ପତ୍ରର ହାରଟିଏ ରାଜା ନର୍ତ୍ତକୀ ମାଧବୀଙ୍କୁ ଦେଲେ। ସଙ୍ଗେ ସଙ୍ଗେ ଦେଲେ ଏକ ହଜାର ସ୍ୱର୍ଣ୍ଣମୁଦ୍ରା। କେବଳ ଅସାମାନ୍ୟ କଳାକାରମାନଙ୍କୁ ରାଜା ନିଜେ ଏଭଳି ସମ୍ମାନ ଦେଖାଉଥିଲେ। ଫଳରେ ମାଧବୀ ଅତି ଆନନ୍ଦରେ ଆତ୍ମହରା ହେଲେ।



ସେ ଯୁଗର ରୀତି ଅନୁସାରେ, ରାଜାଙ୍କ-
ଠାରୁ ମିଳିଥିବା ସେ ସବୁଜପଥର ହାର
ଖଣ୍ଡିକ ଧରି ଛକ ସ୍ଥାନରେ ଠିଆ
ହେବା ନିମନ୍ତେ ମାଧବୀ ତାଙ୍କ
ପରିଚାରିକାକୁ ନିର୍ଦ୍ଦେଶ ଦେଲେ ।
ସେହି ଛକ ଦେଇ ନଗରୀର ଧନୀକ-
ମାନେ ଯିବା ଆସିବା କରନ୍ତି ।

ଯିଏ ସେ ହାର ଏକହଜାର ସ୍ୱର୍ଣ୍ଣମୁଦ୍ରା
ଦେଇ କିଣିବ, ସେ ହେବ ନର୍ତ୍ତକୀଙ୍କ
ପ୍ରଭୁ । ନର୍ତ୍ତକୀଙ୍କ ନାଚ ଗାନ ଉପଭୋଗ
କରିବା ନିମନ୍ତେ ତାର ରହିବ ବିଶେଷ
ଅଧିକାର । ବ୍ୟବସାୟ ଭିତ୍ତିରେ
ସେତେବେଳେ ଯେଉଁମାନେ ନଗରୀର
ନର୍ତ୍ତକୀ ହେଉଥିଲେ, ସେମାନଙ୍କ
ଜୀବନଧାରା ଏହିପରି ଥିଲା ।





କୋଭଲନ୍ ମାଧବୀଙ୍କ ନୃତ୍ୟ ଓ
ରୂପରେ ମୁଗ୍ଧ ହୋଇଥିଲେ । ସେ
ହାରଟି କିଣିଲେ ଓ ପରିଚାରିକାକୁ
ଅନୁସରଣ କରି ମାଧବୀଙ୍କ ଘରେ
ପହଞ୍ଚିଲେ । ମାଧବୀ ତାଙ୍କୁ ସସମ୍ମାନେ
ସ୍ୱାଗତ କଲେ । କୋଭଲନ୍ ମାଧବୀଙ୍କ
ବ୍ୟବହାରରେ ମୁଗ୍ଧ ହେଲେ ।

କୋଭଲନ୍ ମାଧବୀଙ୍କ ଘରକୁ ଗୋଟାଏ ସାମୟିକ ଆକର୍ଷଣର ବଶୀଭୂତ ହୋଇ ଚାଲି ଆସିଥିଲେ। କିନ୍ତୁ ସେ ଦେଖିଲେ, ମାଧବୀଙ୍କ ଠାରୁ ସେ ଆଉ ନିଜକୁ ଅଲଗା କରିପାରୁ ନାହାନ୍ତି। ମାଧବୀ ମଧ୍ୟ କୋଭଲନ୍‌ଙ୍କୁ ନିଜ ସ୍ୱାମୀ ଭାବରେ ଗ୍ରହଣ କଲେ। କୋଭଲନ୍ ରହିଲେ ସେହିଠାରେ।





ଦୁହେଁ ନଗରୀର କେତେ ଆନନ୍ଦ ଓ ରସ ଉପଭୋଗ କରିବାକୁ ଲାଗିଲେ। ସେ ନଗରୀରେ ରହିଥିଲା ଏପରି ଏକ ସ୍ତମ୍ଭ, ଯାହା ଚାରିପଟରେ ବୁଲିଲେ ସର୍ପଦ୍ରଂଷ୍ଟ ବ୍ୟକ୍ତିମାନେ ବିଷ ଦାଉରୁ ରକ୍ଷା ପାଇ ଯାଉଥିଲେ। ସମୁଦ୍ର କୂଳର ସେ ସ୍ତମ୍ଭକୁ ଥରେ ଥରେ ଜଳରାଶି ଘେରି ଯାଉଥିଲା।

ନଗରୀର ଏକ ନିର୍ଜନ ସ୍ଥାନରେ ଗୋଟିଏ ପ୍ରତିମା ଥିଲା। ଯଦି ରାଜା ସ୍ୱୟଂ କୌଣସି ଅନ୍ୟାୟ କରୁଥିଲେ, ତେବେ ସେ ପ୍ରତିମା ନୟନରେ ଅଶ୍ରୁ ଦେଖାଯାଉଥିଲା। ଅତଏବ ରାଜା ସର୍ବଦା ନିଜ କର୍ତ୍ତବ୍ୟ କର୍ମରେ ଜାଗ୍ରତ ରହୁଥିଲେ।





ନଗରୀରେ ଆହୁରି ମଧ୍ୟ ରହିଥିଲା ଏକ ଆଶ୍ଚର୍ଯ୍ୟଜନକ ସରୋବର । ସେଥିରେ ଭକ୍ତିପୂର୍ଣ୍ଣ ଚିତ୍ତରେ ସ୍ନାନ କଲେ ରୋଗୀ ସୁସ୍ଥ ହେଉଥିଲା, ମୂକ କଥା କହି ପାରୁଥିଲା; ବଧୀର ଶୁଣି ପାରୁଥିଲା । କୋଭଲନ୍ ଓ ମାଧବୀ ଆନନ୍ଦରେ କେତେ ସ୍ଥାନ ବୁଲି ସମୟ ଯାପନ କରୁଥାନ୍ତି ।

କୋଠାର ଉପର ମହଲର ବାରନ୍ଦାରେ ଠିଆ ହୋଇ କଣିଥରେ କୋଭଲନ୍ ଓ ମାଧବୀ ସମୁଦ୍ର ଆଡ଼େ ଦୃଷ୍ଟିପାତ କରୁଥିଲେ । ଦେଶ ବିଦେଶର ବୋଇତମାନେ ଆସିଥାନ୍ତି ବାଣିଜ୍ୟ ପାଇଁ । ସ୍ଥାନୀୟ ଧୀବରମାନଙ୍କର ଅଗଣିତ ନୌକା ଭାସୁଥାଏ ଇତସ୍ତତଃ ।





ଏଣେ କୋଭଲନ ଓ ମାଧବୀ ଆନନ୍ଦରେ ଦିନାତିପାତ କଲାବେଳେ ତେଣେ କନ୍ନଗୀ ଦୁଃଖରେ କାଳ କାଟୁଥାନ୍ତି । ସେ କାହାରି ପାଖରେ କୌଣସି ଅଭିଯୋଗ କରୁ ନଥାନ୍ତି । ନିଜ ଗହଣାମାନ ଗୋଟାଏ ପରେ ଗୋଟାଏ ବିକ୍ରି କରି ସେ ନିଜ ଘର ଚଳାଉଥାନ୍ତି । (କ୍ରମଶଃ)



# ବର୍ଷା ରାତିର ବିଳାସ

ରାମ ଦାସ ଓ ତା' ସ୍ତ୍ରୀ ସୁରଶ୍ମି ବହୁ ଦୂର ହାଟକୁ ଯାଇଥିଲେ । ଗାଁକୁ ଫେରିବା ବେଳେ ଜଣେ ବନ୍ଧୁ ଘରେ କିଛି ସମୟ ଅଟକିଗଲେ । ତା'ପରେ ସେମାନେ ଘରକୁ ଫେରିବାକୁ ଉଦ୍ୟତ ହୁଅନ୍ତେ ବନ୍ଧୁ କହିଲେ, "ଆଚ୍ଛା, ରାମଦାସ, ଏଇ ମଫସଲ ରାସ୍ତାରେ ମୁହଁସଞ୍ଜବେଳେ ତୁ ସ୍ତ୍ରୀକୁ ଧରି କାହିଁକି ଯିବୁ? କିଛି ବିପଦ ଆଇପାରେ । ଘରେ ପହଞ୍ଚୁ ପହଞ୍ଚୁ ରାତି ହୋଇଯିବ, ତେଣୁ ଆଜି ରାତିକ ଏଇଠି ରହିଯା କାଲି ସକାଳୁ ଯୁଆଡ଼େ ଇଚ୍ଛା ସିଆଡ଼େ ତୁ ଯିବୁ ।"

"ଆରେ, ଯୁଆଡ଼େ ଇଚ୍ଛା କ'ଣ? ଘରକୁ ତ ଯିବି । ନଡ଼ିଦନିଆ ଚହଳା ରାସ୍ତା । ଖାଲି ଟିକିଏ ଅନ୍ଧାରରେ ଯିବାକୁ ପଡ଼ିବ । ଏଇତ? ଇଏ ଗୋଟାଏ ଆଉ କ'ଣ ବଡ଼ କଥା? ଆମର ଗୋଟାଏ ଜରୁରି କାମ ଅଛି ତା' ଛଡ଼ା କେହି ବନ୍ଧୁବାନ୍ଧବଙ୍କର ମଧ୍ୟ ଆସିବାର ଅଛି । ଯାଇ ସବୁ ବ୍ୟବସ୍ଥା କରିବାକୁ ହେବ । ତେଣୁ ଭାଇ ଆଜି ମୋତେ କ୍ଷମା କରିଦେ । ମୁଁ ଯାଉଛି ।"
ଏତିକି କହି ରାମଦାସ ଓ ତା' ସ୍ତ୍ରୀ ସୁରଶ୍ମି ବନ୍ଧୁଙ୍କଠାରୁ ବିଦାୟ ନେଇ ଘର ଅଭିମୁଖରେ ଯାତ୍ରାରମ୍ଭ କଲେ ।

କିନ୍ତୁ ସେମାନେ ଗୋଟାଏ ସିଧା ରାସ୍ତା ଧରିବା ଉଦ୍ଦେଶ୍ୟରେ ଯାଇ ବାଟବଣା ହୋଇଗଲେ । ଯେତେବେଳକୁ ଅସଲ ବାଟକୁ ଆସିଲେ, ସେତେବେଳକୁ ଯେ ଖାଲି ସଞ୍ଜ ହୋଇ ଆସିଲାଣି, ସେତିକି ନୁହେଁ, ମେଘ ବି ଘୋଟି ଆସିଲାଣି । ପୁଣି ନଈ ପାର ହେବାକୁ ନୌକା ବି ମିଳିଲା ନାହିଁ ।

ଦୁହେଁ କରିବେ କ'ଣ? ଆଖପାଖରେ ଗାଁ ଗଣ୍ଡା ବି ନଥାଏ । କୌଣସି ଗାଁ ଖୋଜି ସେଠାରେ ଆଶ୍ରୟ ଖୋଜିବା ପୂର୍ବରୁ ବର୍ଷା



ଆସିଯିବ । ସେତେବେଳକୁ ଥଣ୍ଡା ପବନ ବହିଲଣି । କଳାହାଣ୍ଡିଆ ମେଘରେ ସାରା ଆକାଶ ଘୋଟି ଗଲଣି । ରାମଦାସ ଓ ସୁରଭି ଭାବିଲେ, "ଅକାରଣରେ ବନ୍ଧୁଙ୍କ କଥା ନ ଶୁଣି ଜିଦ୍ କରି ବାହାରି ଆସିଲେ, ଏବେ ଫଳ ଦେଖ । ଆଜି ଆମକୁ ବହୁତ ହଇରାଣ ହେବାକୁ ହେବ ।"

ହଠାତ୍ ସେମାନଙ୍କ ଆଖିରେ ଗୋଟିଏ ଘର ପଡ଼ିଲା । ସେମାନେ ପାଖକୁ ଯାଇ ଦେଖିଲେ, ଘର ଭିତରେ କେହି ନାହିଁ । ବେଶ୍ ପ୍ରଶସ୍ତ ଘର ଓ ଯୋଡ଼ାଏ ତିନୋଟି ବଖରା ଅଛି, ତେବେ ବହୁତ ଦିନରୁ ସେ ଘରେ କେହି ରହିନାହିଁ ବୋଲି ବୁଝି ହେଉଥାଏ ।

ପ୍ରବଳ ଯୋରରେ ପବନ ଆସିଲା । ଦୁହେଁ ଘର ଭିତରେ ପଶିଲେ । ସୁରଭି ଗୋଟିଏ କୋଠରୀ ପରିଷ୍କାର କରିଦେଲେ । ଦୁହେଁ କ୍ଲାନ୍ତ ହୋଇ ଯାଇଥିଲେ । ବନ୍ଧୁ ଘରେ କିଛି ଖାଇଥିଲେ; ଆଉ ଖାଇବାର ଆବଶ୍ୟକତା ନଥିଲା । ଦୁହେଁ ଶୋଇ ପଡ଼ିଲେ ।

ଝୁହୁଁ ଝୁହୁଁ ବର୍ଷା ଆସିଗଲା । ସାଙ୍ଗକୁ ପବନ ଓ ଘଡ଼ଘଡ଼ି । ଦୁହେଁ ଆଉ ଶୋଇବେ କ'ଣ ? ଭଙ୍ଗା ଝରକା ବନ୍ଦ କରିବାକୁ ଚେଷ୍ଟା କରୁଛନ୍ତି, ଶୁଣିଲେ ଗୋଟାଏ ହସ । ଅନ୍ଧାର ଘର କୋଣରେ ଦେଖିବା ବେଳକୁ ତିନୋଟି ଧଳା ଚେହେରା । ସେମାନେ ଯେ କୌଣସି ବସ୍ତୁରେ ତିଆରି ନୁହନ୍ତି, ଏକଥା ସହଜରେ ବୁଝି ହେଉଥିଲା ।

ଭୟରେ ରାମଦାସ ଓ ସୁରଭିଙ୍କ ଦେହରୁ ଝାଳ ବହିଗଲା ।

"ଡରୁଛ କାହିଁକି ? ଆମେ ତିନୋଟି ସାଧାରଣ ଭୂତ । ଝଡ଼ ବର୍ଷା ହେଉଛି । ତମ ଦୁହିଁଙ୍କୁ ଦେଖି ଭାବିଲୁଁ, ତମ ସହ ଖେଳ କିଛି ସମୟ ବିତାଇ ଦେବା । ତମର କ୍ଷତି କରିବା ଆମର ମତଲବ୍ ନୁହେଁ ।" ତିନୋଟି ଧଳା ଛାଇରୁ ଗୋଟିଏ କହିଲା ।

ସାହସ ସଞ୍ଚୟ କରି ରାମଦାସ ପଚାରିଲା, "ଆଚ୍ଛା, କି ଖେଳ ଖେଳିବା ତମର ଇଚ୍ଛା ?"

"ଶୁଣ । ଆମେ ପ୍ରାୟ ଛଅମାସ ହେବ ଗୋଟାଏ ସୁନା ମୋହର ପାଇଛୁଁ । ଆମେ-

ମାନେ ଭୂତ । ମୋହରରେ ଆମର କ ବା ପ୍ରୟୋଜନ ? ତମମାନଙ୍କ ସହ ଖେଳିବା । ଯଦି ଜିତିବ ମୋହରଟି ତମର । ଖେଳ ସହଜ । ଆମେ ତିନିଜଣଯାକ ଭୂତ ତମ ସ୍ତ୍ରୀ ଭଳି ଦେଖାଯିବା । ତମକୁ ତମର ଅସଲ ସ୍ତ୍ରୀ କିଏ, ତାହା କହିଦେବାକୁ ହେବ ।" ଭୂତମାନେ କହିଲେ ।

କହିସାରି ଦେଖିବା ବେଳକୁ ସେମାନେ ସେହି ଅନୁସାରେ କାମ କରିସାରିଲେଣି ! ରାମଦାସ ଆଗରେ ଚାରିଜଣ ସ୍ତ୍ରୀ ଲୋକ—ସମସ୍ତେ ସୁରଖି ଭଳି ଦେଖିବାକୁ ।

ରାମଦାସ କାବା ହୋଇ ଅନାଇଲା । ପ୍ରତ୍ୟେକଙ୍କ ମୁହଁ ବାରମ୍ବାର ନିରେଖି ଦେଖିଲା । କିନ୍ତୁ ଅସଲ ସୁରଖି କିଏ, ସେକଥା ଠଉରାଇ ପାରିଲା ନାହିଁ ।

ତିନୋଟି ନାରୀ ମୂର୍ତ୍ତି ଖିଲ ଖିଲ ହସି ଉଠିଲେ । ଜଣେ ନୀରବ ରହିଲା । ସେତେବେଳକୁ ରାମଦାସ ନୀରବ ରହିବା ସ୍ତ୍ରୀ ଲୋକକୁ ଦେଖାଇ କହିଲା, "ଇଏ ମୋ ସ୍ତ୍ରୀ !"

"ଆରେ, ଆମେ ହସି ପକାଇ ବଡ଼ ଭୁଲ କଲୁଁ । ଠୋକା ଜିତିଗଲା । କିନ୍ତୁ ତା' ସ୍ତ୍ରୀ ଯଦି ଏଥର ହାରିଯିବ, ତେବେ ମୋହରଟି ପୁଣି ଆମର ହୋଇ ରହିବ । ଭଉଣୀ ! ଏଥର ଆମେ ତମ ସ୍ୱାମୀ ରୂପ ନେବୁଁ । କିଏ ତମ ସ୍ୱାମୀ, ତାହା ତମେ ଚିହ୍ନାଇ ଦିଅ ।" ଭୂତମାନେ କହିଲେ ।



ପର ମୁହୂର୍ତ୍ତରେ ସୁରଖି ଦେଖିଲା, ତା' ଆଗରେ ରାମଦାସ ଭଳି ଦିଶୁଥିବା ଚାରିଜଣ ମଣିଷ ! ସେ କିଛି ସମୟ ଅନାଇଁ ରହି କହିଲା, "ଆଚ୍ଛା, ମୋ ସ୍ୱାମୀ ମୋ ପାଇଁ ହାଟରୁ ଗୋଟିଏ ଗହଣା କିଣି ଦେଇଛନ୍ତି । ସେ ଗହଣାଟି କ'ଣ ଯିଏ ହାତପାପୁଲି ଉପରେ ଲେଖି ଦେଖାଇ ଦେବ, ସେ ମୋ ସ୍ୱାମୀ ।"

"କାହିଁକି, ମୁହଁରେ କହିଲେ ହେବ ନାହିଁ ?" ଜଣେ ଭୂତ କହିଲା ।

"ତମେ ଏ ପାଖକୁ ଠିଆ ହୁଅ । ତମେ ଭୂତ ।" ସୁରଖି ଜଣକୁ ଭୂତ ବୋଲି ଚିହ୍ନି ଦେଲା । ସେ ହସି ପକାଇ ଭୂତ ହୋଇଗଲା । ତଥାପି ତିନିଜଣ ରହିଲେ ।

ସେମାନେ ପାସୁଲ ଦେଖାଇ ଲେଖିବାର ଅଭିନୟ କଲେ । ଯାହା ଲେଖିଲେ, ତାହା 'ମୂର୍ଦ୍ଦ' । ଭୂତମାନେ ସେମାନଙ୍କ ଶକ୍ତି ବଳରେ ଗହଣାଟି କ'ଣ ତାହା ଜାଣି ପକାଇଥାନ୍ତି ବୋଲି ବୁଝିଲ । କିନ୍ତୁ ସେମାନେ ଜଣ ଜଣ କରି ସୁରଭି ଆଗରେ ଲେଖିଲା ବେଳେ ସୁରଭି ତିନିଜଣରୁ ଦୁଇଜଣଙ୍କୁ ଭୂତ ବୋଲି ଚିହ୍ନି ଦେଲା । ଭୂଷ୍ଟାସୁଜଣକର ଲେଖାର ଭଙ୍ଗୀ ଦେଖି ସୁରଭି ଚିହ୍ନି ଦେଲା ଓ କହିଲା, "ଇଏ ହେଲେ ମୋ ସ୍ୱାମୀ ।"

"ଭଉଣୀ, ତମେ ଜାଣିଲ କିପରି ?" ରାମଦାସର ଚେହେରା ତ୍ୟାଗ କରି ଭୂତମାନେ ପଚାରିଲେ ।

"ମୋ ସ୍ୱାମୀ ଯାହା ଲେଖିବାକୁ ଆରମ୍ଭ କରନ୍ତି, ତାହା ପୂର୍ବରୁ ପ୍ରଥମେ 'ଓଁ' ବୋଲି ଲେଖିଥାନ୍ତି । ସେ 'ମୂର୍ଦ୍ଦ' ବୋଲି ଲେଖିବା ପୂର୍ବରୁ ବି ତାହାହିଁ କଲେ । ବାକି ଦୁଇଜଣ ମିଛ ମଣିଷ ସେଇଆ କଲେ ନାହିଁ । ତେଣୁ ଜାଣିବାରେ ଆଉ ଅସୁବିଧା କ'ଣ ?" ସୁରଭି ବୁଝାଇ ଦେଲା ।

ଭୂତମାନେ ହସିଲେ ଓ କହିଲେ, "ବର୍ଷା ଛାଡିଗଲାଣି । ଏଥର ଚାଲିଲୁଁ । ହେଇଟି, ସେ କୋଣରେ ଯେଉଁ ଭଙ୍ଗା ସରା ପଡିଛି, ତାହାର ତଳେ ସାମାନ୍ୟ ମାଟି ଖୋଳିଲେ ମୋହରଟି ମିଳିଯିବ । ହେଉ ।"

ଭୂତମାନେ ଚାଲିଗଲେ । ସକାଳେ ରାମଦାସ ଟିକିଏ ମାଟି ଉଖାରି ଦେଇ ଦେଖିଲା, ସୁନା ମୋହରଟିଏ ସତରେ ରହିଛି ।

"ଭୂତଙ୍କ ସହ କାରବାରରୁ ଲାଭ ମନ୍ଦ ହୋଇନାହିଁ !" ଟିକିଏ ପରେ ରାମଦାସ ହସି ହସି ତାଙ୍କ ସ୍ତ୍ରୀକୁ କହିଲା ।

"କିନ୍ତୁ ଏ ମୋହର ଭଙ୍ଗାଇ ଯାହା ମିଳିବ, ତାହା କୌଣସି ପୁଣ୍ୟ କାମରେ ଲଗାଇବା ।" ସୁରଭି କହିଲା ।

"ନିଶ୍ଚୟ, ନିଶ୍ଚୟ !" ରାମଦାସ ସମ୍ମତ ହେଲା ।






# କୃଷ୍ଣାବତାର

କରବୀରପୁରରେ ପହଞ୍ଚି କୃଷ୍ଣ ଓ ବଳରାମ ରାଜପୁରୀର ଦ୍ୱାରରକ୍ଷୀକୁ କହିଲେ, "ତୁମ ରାଜାଙ୍କୁ ଖବର ଦିଅ ଯେ କୃଷ୍ଣ ଓ ବଳରାମ ତୁମ ସହିତ ଯୁଦ୍ଧ କରିବାକୁ ଆସିଛନ୍ତି । ତାଙ୍କର ଶରଣ ନିଅ ; ନହେଲେ ତୁରନ୍ତ ଯୁଦ୍ଧ କରିବାକୁ ବାହାରକୁ ଆସ ।"

ଦ୍ୱାରରକ୍ଷୀ ଏହା ଶୁଣି ପ୍ରଥମେ ନିଜ କାନକୁ ବିଶ୍ୱାସ କରିପାରିଲା ନାହିଁ । କିନ୍ତୁ କୃଷ୍ଣ ବଳରାମଙ୍କୁ ଦେଖି ସେ ବୁଝିପାରିଲା ଯେ ସେ ଦୁହେଁ ଅସାଧାରଣ । ସେ ସ୍ତବ୍ଧ ହୋଇ ରହି ତା'ପରେ ପ୍ରାସାଦ ଭିତରକୁ ଦୌଡ଼ିଲା ।

ଦୂତଠାରୁ ଏ ସମ୍ବାଦ ଶୁଣି ଶୃଗାଳବାସୁଦେବ କ୍ରୋଧରେ ଜଳି ଉଠିଲା । ତତ୍‌କ୍ଷଣାତ୍ ସେ ନାନାଦି ଆୟୁଧରେ ସଜ୍ଜିତ ହୋଇ ସୂର୍ଯ୍ୟଙ୍କଠାରୁ ପ୍ରାପ୍ତ ଦିବ୍ୟ ରଥରେ ଚଢ଼ି, ସାଙ୍ଗରେ ସୈନ୍ୟ-ସାମନ୍ତ ନ ନେଇ ଯୁଦ୍ଧ କରିବାକୁ ବାହାରି ପଡ଼ିଲା । ନିଜର ବାହୁବଳ, ଶକ୍ତି ଓ ପରାକ୍ରମ ଉପରେ ତା'ର ବହୁତ ବିଶ୍ୱାସ ଥିଲା । ସେ ରାଜନଗରରୁ ବାହାରି ପଦାକୁ ଆସିଲା । ତା'ର ଦୁଇ ଚକ୍ଷୁ କ୍ରୋଧରେ ଜଳୁଥିଲା । ସେ ସାକ୍ଷାତ୍ ଯମଙ୍କ ପରି ଦେଖା ଯାଉଥିଲା । ତା'ର ଏପରି ରୂପ ଦେଖି କୃଷ୍ଣ ଓ ବଳରାମ ଆଶ୍ଚର୍ଯ୍ୟ ହେଲେ । କିନ୍ତୁ ଦମଘୋଷ ମୂଳରୁହିଁ କୃଷ୍ଣ ଓ ବଳରାମଙ୍କୁ ଉତ୍ସାହିତ କରୁଥା'ନ୍ତି ।

ତା'ପରେ କୃଷ୍ଣ ନିଜ ରଥକୁ ଶୃଗାଳ-ବାସୁଦେବ ରଥ ପାଖରେ ନେଇ ରଖିବାକୁ ସାରଥିକୁ ନିର୍ଦ୍ଦେଶ ଦେଲେ । ଦୁହିଙ୍କ ମଧ୍ୟରେ ଘୋର ଯୁଦ୍ଧ ଆରମ୍ଭ ହୋଇଗଲା । କିଛି ସମୟ




ପରେ ଦୁହେଁ ଦୁହିଁଙ୍କ ଉପରେ ନାନା ପ୍ରକାର ବାଣ ଓ ଅସ୍ତ୍ର ପ୍ରହାର କରିବାକୁ ଲାଗିଲେ । କେବଳ ଅସ୍ତ୍ର ଓ ଶର ସବୁ ଭାଙ୍ଗିବା ସାର ହେଲା । କେହି କାହାକୁ ହଟାଇ ପାରିଲେ ନାହିଁ ; ଏମିତି କିଛି ସମୟ ଘୋର ଯୁଦ୍ଧ ଚାଲିବା ପରେ କୃଷ୍ଣଙ୍କର ଗୋଟିଏ ଶର ମାଡ଼ରେ ତା'ର ଧନୁଟି ଭାଙ୍ଗିଗଲା ଓ ସାରଥି ମରିଗଲା । କିନ୍ତୁ ଶୃଗାଳବାସୁଦେବ ଭୟ ନ କରି କହିଲା, "ଆରେ ପାପିଷ୍ଠ କୃଷ୍ଣ, ତୋର ଅନ୍ୟ ନାମ ବାସୁଦେବ । ତୁ ଗୋମନ୍ତକ ପର୍ବତ ପାଖରେ ଜରାସନ୍ଧ ଆଦି କେତେଜଣ ବୃଦ୍ଧ ଲୋକଙ୍କୁ ଯେପରି ଯୁଦ୍ଧରେ ହରାଇ ଦେଲୁ, ଭାବିଛୁକି ମୁଁ ସେଇପରି ? ସେକଥା ଭୁଲି ଯା । ବିଜୟ-ଗର୍ବରେ ଅନ୍ଧ ହୋଇ ତୁ ମୋ ପାଖକୁ ଆସିଛୁ । ତତେ ଥରେ ଏପରି ଶିକ୍ଷା ଦେବି ଯେ ସାରା ଜୀବନ ପାଇଁ ଆଉ ଯୁଦ୍ଧ କରିବୁ ନାହିଁ । ତୁ ଏବେ ଏକା, ମୁଁ ମଧ୍ୟ ଏକା । ଏହାକୁ କୁହନ୍ତି ଧର୍ମଯୁଦ୍ଧ । କିନ୍ତୁ ମନେରଖ ଏ ଯୁଦ୍ଧରେ ଜଣେ ନା ଜଣେ ମରିବ । ଏ ପୃଥିବୀ ପୃଷ୍ଠରେ ଦୁଇଜଣ ବାସୁଦେବ ରହିବାର ଆବଶ୍ୟକତା ନାହିଁ । ତୁ ରହିବୁ ବା ମୁଁ ରହିବି । ଏବେ ସମ୍ମୁଖକୁ ଆସି ଯା ଓ ତୋର ସମସ୍ତ ଯୁଦ୍ଧ କୌଶଳ ନେଇ ଯୁଦ୍ଧ କର ।"

ଶ୍ରୀକୃଷ୍ଣ ଏକଥା ଶୁଣି ଅଳ୍ପ ଅଳ୍ପ ମନ୍ଦହାସ କରି କହିଲେ, "ଯଦି ଏବେ ମଧ୍ୟ ଯୁଦ୍ଧ କରିବାର ଇଚ୍ଛା ତୁମର ଅଛି ତେବେ ନିଜ ଶକ୍ତିର ପରିଚୟ ଦିଅ । ମୁଁ ମଧ୍ୟ ଦେଖିବାକୁ ଚାହେଁ । ତେଣୁ ଏବେ ବାକ୍ୟବ୍ୟୟ ନ କରି ଯୁଦ୍ଧ କର ।"

ଶ୍ରୀକୃଷ୍ଣଙ୍କ କଥା ଶୁଣି ଶୃଗାଳବାସୁଦେବ କ୍ରୋଧରେ ଲାଲ ହୋଇଗଲା ଓ ତତ୍କ୍ଷଣାତ୍ ଧନୁ ଉପରେ ବାଣ ଚଢ଼ାଇଲା । ଶର ସବୁ ମାରି ମାରି ଆକାଶକୁ ଅନ୍ଧକାରରେ ଘୋଟି ଦେଲା । ଏସବୁ ଦେଖି କୃଷ୍ଣ କହିଲେ, "ବାସ୍ ବାସ୍, ତୁମ ପାଖରେ ବହୁ ପ୍ରକାରର ଅସ୍ତ୍ରଶସ୍ତ୍ର ଥିବାର ପ୍ରମାଣ ମିଳିଗଲା । ତୁମର ରଣକୌଶଳ ମଧ୍ୟ ପ୍ରଶଂସାର ଯୋଗ୍ୟ । ଏବେ ମୋର ଅସ୍ତ୍ର ବିଷୟରେ ତୁମର ମଧ୍ୟ ଜ୍ଞାନ ହେବା ଆବଶ୍ୟକ । ଏତେ ପ୍ରକାରର ଅସ୍ତ୍ରଶସ୍ତ୍ର ଆମେ

କାହୁଁ ପାଇବୁ ଓ ଏତେ ପ୍ରକାର ରଣକୌଶଳ ବା ଆମେ କାହୁଁ ଶିଖିବୁ । ଏଇ ଦେଖ ଗୋଟିଏ ମାତ୍ର ଅସ୍ତ୍ର । ନିଅ ସମ୍ଭାଳ ।" ଏତିକ କହି ସେ ସୁଦର୍ଶନ ଚକ୍ରକୁ ପ୍ରୟୋଗ କଲେ । ଚକ୍ର ତାଙ୍କ ହାତରୁ ଯାଇ ତତ୍‌କ୍ଷଣାତ୍ ଶୃଗାଳ-ବାସୁଦେବର ମସ୍ତକ ଶରୀରରୁ କାଟିଦେଇ ପୁଣି ଫେରି ଆସିଲା ।

ଶୃଗାଳବାସୁଦେବର ମୃତ୍ୟୁ ଖବର ଶୁଣି ସାରା ରାଜ୍ୟ ଭୟରେ କମ୍ପିଲେ । ରାଜନବରରୁ ରାଣୀମାନଙ୍କର କ୍ରନ୍ଦନରୋଳ ଶୁଣାଗଲା । ପାଟ-ମହିଷୀ ତାଙ୍କର ପୁତ୍ର ଶକ୍ରଦେବଙ୍କୁ ସାଥିରେ ଧରି ଶ୍ରୀକୃଷ୍ଣଙ୍କ ପାଖକୁ ଆସି ନିବେଦନ କଲେ ଓ ଶ୍ରୀକୃଷ୍ଣଙ୍କର ଶରଣ ଗଲେ । ଶ୍ରୀକୃଷ୍ଣ ରାଣୀମାନଙ୍କୁ ସାନ୍ତ୍ୱନା ଦେଲେ । ତା'ପରେ ସେ ରାଜ୍ୟର ମନ୍ତ୍ରୀ, ଅମାତ୍ୟ ଓ ପାରିଷଦବର୍ଗଙ୍କୁ ଡକାଇ ଯୁବରାଜ ଶକ୍ରଦେବଙ୍କର ରାଜ୍ୟାଭିଷେକ କରାଇଦେଲେ ।

ତା'ପରେ ଶ୍ରୀକୃଷ୍ଣ ଓ ବଳରାମ ମଥୁରା ଫେରି ଆସିବା ପାଇଁ ପ୍ରସ୍ତୁତ ହେଲେ । ସେମାନଙ୍କର ପିଉସା ଦମଘୋଷ ନିଜର ସୈନ୍ୟସାମନ୍ତ ନେଇ ଚେଦି ରାଜ୍ୟକୁ ଲେଉଟି ଗଲେ । କୃଷ୍ଣ ଓ ବଳରାମ ମଥୁରାକୁ ଗଲେ । ମଥୁରା ସୀମାରେ ପହଞ୍ଚି ସେ ପାଞ୍ଚଜନ୍ୟ ଶଙ୍ଖ ଫୁଙ୍କିଲେ । ଶଙ୍ଖନାଦ ଶୁଣି ଉଗ୍ରସେନ ବୁଝିପାରିଲେ ଯେ ଦୁଇଭାଇ ଏବେ ଫେରି ଆସିଲେ । ତେଣୁ ସେ ପାତ୍ରମନ୍ତ୍ରୀ, ପୁରୋହିତ ଓ ଅନ୍ୟାନ୍ୟ ପାରିଷଦ-ବର୍ଗଙ୍କୁ ସାଙ୍ଗରେ ନେଇ ସେମାନଙ୍କୁ ପାଛୋଟି ଆଣିଲେ । ଏତେଦିନ ପରେ କୃଷ୍ଣବଳରାମଙ୍କୁ





ପାଇ ସମସ୍ତେ ଆନନ୍ଦିତ ହେଲେ । ମଥୁରା-ନଗରୀରେ ନାନା ଆନନ୍ଦ ଉତ୍ସବ ହେଲା ।

ଏଣେ କୃଷ୍ଣବଳରାମଙ୍କ ଦ୍ୱାରା ପରାଜିତ ହୋଇ ଜରାସନ୍ଧ ମନରେ ଅପମାନ, ରାଗ ଓ କ୍ରୋଧ, ସବୁ ଜଳୁଥିଲା । ଏକମାତ୍ର କଥା ସେ ସବୁବେଳେ ଭାବୁଥାଏ କିପରି ଏହାର ପ୍ରତିଶୋଧ ନେବ । ତା'ପରେ ସେ ସବୁ ରାଜାଙ୍କୁ ଡାକି ଏକ ସଭା କଲା । ସେ କହିଲା, "ଗତଥର ଆମର ସବୁ ପ୍ରସ୍ତୁତି ସତ୍ତ୍ୱେ ଆମ ଭାଗ୍ୟର ବିଡ଼ମ୍ବନା ଯୋଗୁ ଆମେ ହାରିଗଲୁ । ପାପୀ ଭଗବାନ୍‌ହିଁ ଆମର ସପକ୍ଷରେ ନଥିଲେ । ସେଥିପାଇଁ ଦୁଇଟା ଟୋକା ଆମର ଏଡ଼େ ବଡ଼ ବଡ଼ ବୀର ଓ ସୈନ୍ୟବଳକୁ ହରାଇ ଦେଲେ । ତଦ୍ୱାରା ଆମର ନିନ୍ଦା ଓ ଅପଯଶ ହେଲା ଯାହା ଚିରଦିନ ପାଇଁ ରହିଯିବ । ତେଣୁ ସେ କଳଙ୍କ ପୋଛିବାକୁ ହେଲେ ଆମେ ପୁନର୍ବାର ମଥୁରା ଆକ୍ରମଣ କରି ସେମାନଙ୍କୁ ମାରିଦେବା । ଆପଣମାନେ ନିଜର ସୈନ୍ୟବଳ ଧରି ମଥୁରା ଯାଆନ୍ତୁ, ମୁଁ ମୋର ସୈନ୍ୟବଳ ଧରି ଆସୁଛି ।"

ଜରାସନ୍ଧର ଏହି ପ୍ରସ୍ତାବକୁ ସମସ୍ତେ ସ୍ୱୀକାର କଲେ; କାରଣ ସମସ୍ତେ ଗୋମନ୍ତକ ପର୍ବତରେ ଯୁଦ୍ଧରେ ହାରି ଅପମାନିତ ହୋଇ ପଳାଇ ଆସିଥାନ୍ତି । ଆଗରୁ ଯେଉଁମାନେ କଂସର ବନ୍ଧୁ ଥିଲେ । ସେମାନେ ଏବେ ଯାଦବଙ୍କର ଶତ୍ରୁ ହୋଇଛନ୍ତି । ପୁଣି ଜରାସନ୍ଧର ସାମନ୍ତ ରାଜାମାନେ ମଧ୍ୟ ସେହି ବିରାଟ ଯୁଦ୍ଧ ଅଭିଯାନରେ ଯୋଗ ଦେଲେ । ଏଥର ଜରାସନ୍ଧ ଓ ଅନ୍ୟ ରାଜାମାନେ ନିଜ ନିଜର ସୈନ୍ୟବଳ ନେଇ ଯମୁନା ନଦୀ ତଟରେ ଶିବିର ସ୍ଥାପନ କଲେ । ଏଥରକି ସମସ୍ତେ ସୁନିଶ୍ଚିତ ଥିଲେ କି ଯୁଦ୍ଧରେ କୃଷ୍ଣ ବଳରାମ ନିଶ୍ଚୟ ହାରିବେ ।

କୃଷ୍ଣ ବଳରାମ ଓ ଅନ୍ୟମାନେ ଦୁର୍ଗ ପ୍ରାଚୀର ଉପରେ ଚଢି ଦେଖିଲେ । ଜରାସନ୍ଧର ସୈନ୍ୟମାନେ ଦୁର୍ଗର ଚତୁର୍ଦ୍ଦିଗରେ ପ୍ରଳୟ-କାଳୀନ ସମୁଦ୍ର ପରି ଘେରି ରହିଛନ୍ତି । ଦୁଇଭାଇ କଥାବାର୍ତ୍ତା କରି ଠିକ୍ କଲେ ନିଜର ସୈନ୍ୟମାନଙ୍କୁ ନେଇ ଯୁଦ୍ଧକ୍ଷେତ୍ରକୁ ଯିବେ । ସୈନ୍ୟସଜ୍ଜା ଚାଲିଲା । ରଥମାନଙ୍କୁ ମଧ୍ୟ ପ୍ରସ୍ତୁତ କରାଗଲା ।

ଏଣେ ଜରାସନ୍ଧ ରାଜାମାନଙ୍କୁ ଡ଼ାକି ବରାଦ ଦେଲା କେଉଁ ରାଜା କେଉଁ କେଉଁ ଦ୍ୱାର ଜଗିବେ ଓ ଯୁଦ୍ଧ କରିବେ । କେତେକ ରାଜା ସୈନ୍ୟ-ସାମନ୍ତ ଧରି ଦୁର୍ଗର ପ୍ରାଚୀର ଖୋଳି ଭାଙ୍ଗିବାକୁ ଯିବେ । ଏହିପରି ଯୁଦ୍ଧର ସମସ୍ତ ବନ୍ଦୋବସ୍ତ ଜରାସନ୍ଧ କରି ନିଜେ ପ୍ରଧାନ ଦ୍ୱାରରେ ଜଗି ରହିଲା ।

କିଛି ସମୟ ପରେ ଗରୁଡ଼କେତନଧାରୀ ରଥରେ ସ୍ୱୟଂ ଶ୍ରୀକୃଷ୍ଣ ଅସ୍ତ୍ରଶସ୍ତ୍ର ଧନୁର୍ଦ୍ଧାର, ଗଦା, ଚକ୍ର ସହିତ ଆସିଲେ । ବଳରାମ ହଳ, ମୁଷଳ ଓ ଗଦା ଧରି ଆସିଲେ । ଦୁହେଁ ଯୁଦ୍ଧବେଶରେ ସୁସଜ୍ଜିତ ହୋଇ ଅତ୍ୟନ୍ତ ଶୋଭାୟମାନ ଦିଶୁଥା'ନ୍ତି । ତାଙ୍କର ଅଗ୍ରଣୀ ହୋଇଥା'ନ୍ତି ସ୍ୱୟଂ ରାଜା ଉଗ୍ରସେନ ।

ଉଗ୍ରସେନଙ୍କୁ ଦେଖି ଜରାସନ୍ଧ ରାଗରେ ଦାନ୍ତ କଡ଼ମଡ଼ କରି କହିଲା, "ଭୋଜବଂଶୀମାନଙ୍କ ରାଜ୍ୟରେ ଯାଦବମାନଙ୍କର ଏତେ ପ୍ରଭୁପଣି କାହିଁକି ? ତୁମକୁ ଲଜ୍ଜା ନାହିଁ ? ତୁମର ପୃଥିବୀ ପ୍ରସିଦ୍ଧ ମହାପରାକ୍ରମଶାଳୀ ପୁତ୍ର କଂସକୁ ବଧ ଯିଏ କରିଛି ସେହି ପୁତ୍ରହନ୍ତା ଆଜି ତୁମର ବନ୍ଧୁ । ନାମକୁ ମାତ୍ର ତୁମକୁ ରାଜା କରି ନିଜେ ରାଜ୍ୟଶାସନ ହାତରେ ରଖି ବସିଛି । ତମର ବୃଦ୍ଧ ବୟସ । ପୁତ୍ର ମରିବା ପରେ ମନରେ ଆହୁରି ଲୋଭ ରଖି ବସିଛ ? ରାଜା ହୋଇ ରହିଛ । ତୁମେ ଲଜ୍ଜା ବୋଧ କରୁନାହିଁ ଟିକଏ ? ଆହୁରି ରାଜା ହୋଇ ରାଜ୍ୟ ଉପଭୋଗ କରୁଛ ? ଏହା ମନେରଖ, ତମେ କୃଷ୍ଣର ସେବକ ମାତ୍ର । ତମେ ରାଜା





ନୁହଁ, କେବେ ବି ନଥିଲ, କେବେ ବି ହୋଇ-
ପାରିବ ନାହିଁ ।"

ଏସବୁ ନିନ୍ଦାବାକ୍ୟ ଶୁଣି ଶ୍ରୀକୃଷ୍ଣ କହିଲେ, "ମୂର୍ଖ, ସାଧୁ ଉଗ୍ରସେନଙ୍କର ତମେ କାହିଁକି ନିନ୍ଦା କରୁଛ ? ସେ ତୁମ ପାଖରେ କି ଅପରାଧ କଲେ ? ପ୍ରକୃତରେ ଦେଖିଲେ ତ ମୁଁ ତୁମର ଶତ୍ରୁ । ତୁମର ଜାମାତା କୁଖ୍ୟାତ, ଅତ୍ୟାଚାରୀ, ପାପୀ ରାଜା କଂସକୁ ମୁଁ ବଧ କରିଛି । ତମେ ନିନ୍ଦା କରିବାକୁ ଚାହିଁଲେ ମୋର କର, ତାଙ୍କର କାହିଁକି ? ମୋ ସହିତ ଗୋମନ୍ତକ ପର୍ବତରେ ଯେଉଁ ଯୁଦ୍ଧ ହୋଇଥିଲା ସେସବୁ ଭୁଲିଗଲ କି ? ତୁମ କଥା ଗୁଡିକ ଅତ୍ୟନ୍ତ ହାସ୍ୟାସ୍ପଦ । ଗୋମନ୍ତକ ଯୁଦ୍ଧରେ ସିନା ଡରି ପଳାଇ ଆସିଥିଲ । ଏଥର ବୀରଭଳି ସହିତ ସମ୍ମୁଖ ଯୁଦ୍ଧ କର ।" ଏତିକି କହି ଶ୍ରୀକୃଷ୍ଣ ଯୁଦ୍ଧ କରିବାକୁ ଲାଗିଲେ ।

ଦୁଇପକ୍ଷ ମଧ୍ୟରେ ଘୋର ଯୁଦ୍ଧ ହେଲା । ଉଗ୍ରସେନ ମଧ୍ୟ ବହୁ ପ୍ରକାର ଯୁଦ୍ଧ କୌଶଳ ଦେଖାଇଲେ । କୃଷ୍ଣଙ୍କର ରୁକ୍ମଙ୍କ ସହିତ ଯୁଦ୍ଧ ହେଲା । ସେ ହାରି ପଳାଇଲା । ବଳରାମଙ୍କ ଗଦା ପ୍ରହାର ସହ୍ୟ କରି ନପାରି ଜରାସନ୍ଧର ସୈନ୍ୟମାନେ ଛିନ୍ନଛତ୍ର ହୋଇ ଇତସ୍ତତଃ ପଳାଇଲେ । ଏସବୁ ଦେଖି ଜରାସନ୍ଧ ବଳରାମଙ୍କୁ ଅଟକାଇଲା । ଦୁହିଁଙ୍କ ଭିତରେ ଘୋର ଗଦାଯୁଦ୍ଧ ହେଲା । ଜରାସନ୍ଧର ରଥ ପ୍ରଭୃତି ବଳରାମଙ୍କ ଗଦା ପ୍ରହାରରେ ଭାଙ୍ଗି ଯାଇଥାଏ । ଦୁହେଁ ଭୂମି ଉପରେ ଦଣ୍ଡାୟମାନ ହୋଇ ଗଦାଯୁଦ୍ଧ କଲେ । ଗଦାଯୁଦ୍ଧ ସମାପ୍ତ ହେଲା । କିନ୍ତୁ ହାରଜିତ୍ କିଛି ଜଣାଗଲା ନାହିଁ ।

ତା'ପରେ କିଛିଦିନ ପର୍ଯ୍ୟନ୍ତ ଯୁଦ୍ଧ କରି କରି ଜରାସନ୍ଧ ଥକିଗଲା । କିନ୍ତୁ ଜିତି ପାରିଲା ନାହିଁ । ତେଣୁ ଏଥର ମଧ୍ୟ ରାଜାମାନଙ୍କୁ ଓ ସୈନ୍ୟମାନଙ୍କୁ ନେଇ ନିଜ ରାଜ୍ୟକୁ ଲେଉଟି ଗଲା । ଏଥର ମଧ୍ୟ ସେ ଭାବିଲା ଯେ ଦୈବ ତାଙ୍କର ଅନୁକୂଳ ନୁହନ୍ତି ।

ତା'ପରେ ଜରାସନ୍ଧ ନିରାଶ ନ ହୋଇ ଅଠର ଥର ମଥୁରା ଆକ୍ରମଣ କରିଥିଲା । କିନ୍ତୁ ସବୁଥର ପରାଜିତ ହୋଇ ଫେରିଯାଏ । ପୁଣି ଜରାସନ୍ଧର ମୃତ୍ୟୁ ଅନ୍ୟ ଭାବରେ ହେବାର ବିଧିନିର୍ଦ୍ଦିଷ୍ଟ ତେଣୁ କୃଷ୍ଣ ମଧ୍ୟ ତାକୁ ସଂହାର କରି ନଥିଲେ ।

କିଛିଦିନ ଶାନ୍ତି ଆନନ୍ଦରେ ବିତିଗଲା । ବଳରାମଙ୍କର ଦିନେ ପିଲାବେଳର କଥା ମନେ ପଡ଼ିଲା । କୃଷ୍ଣ ତାଙ୍କୁ ପରାମର୍ଶ ଦେଲେ ଯେ ସେ ଥରେ ଯାଇ ଗୋପପୁର ବୁଲି ଆସିଲେ ଭଲ । ବଳରାମ ଖୁସି ହୋଇ ଗୋପାଳ ବେଶରେ ସଜ୍ଜିତ ହୋଇ ଗୋପକୁ ଗଲେ । ସେଠାରେ ସମସ୍ତେ ବଳରାମଙ୍କୁ ଦେଖି ଆନନ୍ଦିତ ହେଲେ । ବଳରାମ ଗୁରୁଜନମାନଙ୍କୁ ପ୍ରଣାମ କଲେ । ଲଘୁଜନଙ୍କର ପ୍ରଣାମ ଗ୍ରହଣ କଲେ ଓ ସାଙ୍ଗସାଥିମାନଙ୍କୁ ଆଲିଙ୍ଗନ କଲେ । ସମସ୍ତେ ଶ୍ରୀକୃଷ୍ଣଙ୍କ କଥା ପଚାରି ପଚାରି ତାଙ୍କୁ ବ୍ୟସ୍ତ କଲେ ।

ବୃଦ୍ଧମାନେ କହିଲେ, "ତୁମ ଦୁଇଭାଇଙ୍କ କଥା ଶୁଣି ଆମେ ଖୁବ୍ ଗର୍ବିତ । ତୁମେ ତ ଆମରି ପିଲା, ଆମରି ପାଖରେ ବଢ଼ିଛ, ମଣିଷ ହୋଇଛ, ଆମରି କେତେ ଆଦରର ଧନ । ଆଜି ତମେ ବଡ଼ ହୋଇ କେତେ ରାକ୍ଷସ ମାରିଲ, କଂସ ବଧ କଲ, ଗୋମନ୍ତକ ପର୍ବତରେ ଯୁଦ୍ଧ ଆଦି ସବୁ ସମାଚାର ଶୁଣି ଆମ ମନ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଉଠୁଛି । ଯେତେ ଦୂରରେ ରହିଲେ ମଧ୍ୟ ମାତୃଭୂମି ପାଇଁ ମନ ସଦା ବ୍ୟାକୁଳ ହୁଏ । ତମେ ଆସିଛ ଆମେ ଆଜି ଅତି ଆନନ୍ଦିତ ।"

ବଳରାମ କହିଲେ, "ମୁଁ ଓ କୃଷ୍ଣ ସର୍ବଦା ଗୋପପୁର କଥା ଓ ବାଲ୍ୟଜୀବନ କଥା ସ୍ମରଣ କରୁ । ଆପଣମାନେ ଯେତେ ଶ୍ରଦ୍ଧା ଓ ଆଦରରେ ଆମକୁ ପାଳିଥିଲେ ସେକଥା କ'ଣ ଆମେ ଭୁଲି ପାରିବୁ ? ସମସ୍ତ ରାଜୈଶ୍ୱର୍ଯ୍ୟ ମଧ୍ୟରେ ଗୋପପୁର କଥା ମନେ ପଡ଼ିଲେ ମୁଁ ଓ କୃଷ୍ଣ ଉଦାସ ହୋଇପଡ଼ୁ । କି ମଧୁର ସେ ଦିନଗୁଡ଼ିକ ।"

ବଳରାମଙ୍କଠାରୁ ଏସବୁ ଶୁଣି ସମସ୍ତେ ଖୁବ୍ ଖୁସି ହେଲେ । ତା'ପରେ ସମସ୍ତେ ନାନା ପ୍ରକାର ଖାଦ୍ୟ ଦ୍ରବ୍ୟ ଓ ନାନା ଉପହାର ସବୁ ବଳରାମଙ୍କୁ ଦେଇ ନିଜ ନିଜର ପ୍ରେମଭାବ ପ୍ରଦର୍ଶନ କଲେ ।





# ଇନ୍ଦ୍ରଜାଲ

ପ୍ରାଚୀନ କାଳରେ ଚନ୍ଦ୍ରକୁଟରେ ରାଜତ୍ୱ କରୁଥା'ନ୍ତି ରାଜା ଚନ୍ଦ୍ରସେନ୍। ତାଙ୍କ ରାଣୀଙ୍କର ଅନେକ ସଉକ୍ ଭିତରେ 'ଇନ୍ଦ୍ରଜାଲ' ପ୍ରତି ଖୁବ୍ ସଉକ୍ ଥିଲା, ଆକର୍ଷଣ ଥିଲା ବେଶି, ଫଳରେ ରାଣୀଙ୍କର ବିଶେଷ ଅନୁରୋଧରେ ରାଜା ତାଙ୍କ ରାଜ୍ୟରେ ଘୋଷଣା କଲେ ଯେ ନାନା ପ୍ରକାର 'ଇନ୍ଦ୍ରଜାଲ'ର କାର୍ଯ୍ୟକ୍ରମ ହେବ। ପ୍ରତିଯୋଗିତାରେ ଯେଉଁ ଯାଦୁକର ଶ୍ରେଷ୍ଠ ବିବେଚିତ ହେବ ସେ ପୁରସ୍କାର ପାଇବ ଲକ୍ଷେ ସ୍ୱର୍ଣ୍ଣମୁଦ୍ରା। ଅନ୍ୟମାନେ ମଧ୍ୟ କିଛି କିଛି ପାଇବେ।

ଏ ଘୋଷଣା ଶୁଣି ବହୁ ଦୂର ଦୂରାନ୍ତରରୁ ଯାଦୁକରମାନେ ଆସିଲେ। ଯାଦୁ ପ୍ରଦର୍ଶନ ପାଇଁ ଦିନ ଧାର୍ଯ୍ୟ କରାଗଲା। ମଣ୍ଡପ ଇତ୍ୟାଦି ପ୍ରସ୍ତୁତ କରାଗଲା। ଯାଦୁକରମାନେ ନିଜ ନିଜର ଯାଦୁବିଦ୍ୟା ଦେଖାଇବାକୁ ପ୍ରସ୍ତୁତ ହୋଇ ରହିଲେ। ଜଣେ ଶୂନ୍ୟରେ ଝୁଲିଲା, କେହି ବା ମନୁଷ୍ୟକୁ ମାଙ୍କଡ଼ କରିଦେଲା ଓ କଥାବାର୍ତ୍ତା କଲା ସେ ମାଙ୍କଡ଼ ସହିତ। କିଏ ବା ସାରା ମଣ୍ଡପରେ ଭୂମିକମ୍ପ ସୃଷ୍ଟି କଲା, ଏହିପରି ନାନା ପ୍ରକାର ଯାଦୁର ଖେଳ ପ୍ରଦର୍ଶିତ ହେଉଥାଏ। ସବୁଗୁଡ଼ିକ ଏତେ ଚମତ୍କାର ହେଉଥାଏ ଯେ ରାଜା ବଡ଼ ସମସ୍ୟାରେ ପଡିଲେ କାହାକୁ ପୁରସ୍କାର ଦେବେ। ତେଣୁ ସେ ଦର୍ଶକମଣ୍ଡଳୀଙ୍କୁ ଅନୁରୋଧ କରି କହିଲେ, "ଆପଣମାନେ ଯାହାକୁ ଶ୍ରେଷ୍ଠ ବିବେଚିତ କରିବେ, ପୁରସ୍କାର ତାକୁହିଁ ଦିଆଯିବ।" ଦର୍ଶକମାନେ ମହା ହଇରାଣରେ ପଡ଼ିଲେ। ଜଣେ ଦର୍ଶକ ଗୋଟିଏ ନାମ କହିଲେ ଆଉ କିଏ ଆଉ କାହା ନାମ କହୁଛି। କିଛି ନିର୍ଣ୍ଣୟ ତ ହୋଇ ପାରିଲା ନାହିଁ। କେବଳ କୋଳାହଳହିଁ ସାର ହେଲା।

"ବସୁନ୍ଧର"



ଆପଣଙ୍କୁ ଗୋପନରେ କହିବ । ଯାହାର ନାମ ଅଧିକ ସଂଖ୍ୟକ ଯାଦୁକର କହିଥିବେ ସେହିଁ ପୁରସ୍କାର ବିଜୟୀ ହେବ ।"

ଏ କଥାଟି ରାଜାଙ୍କ ମନକୁ ପାଇଲା । ସେମାନେ ସେମାନଙ୍କର ମତଦାନ କଲେ । ଅବଶେଷରେ ରାଜା ଦେଖିଲେ ଜାଲନନ୍ଦହିଁ ସର୍ବୋଚ୍ଚ ସଂଖ୍ୟା ପାଇଛନ୍ତି । ତେଣୁ ସେହିଁ ସର୍ବଶ୍ରେଷ୍ଠ ଯାଦୁକର ବିବେଚିତ ହେଲେ ।

ଏକଥା ଶୁଣି ଜଣେ ଯାଦୁକର ଉଠିପଡ଼ି କହିଲେ, "ମହାରାଜ, ଏଥିରେ କିଛି ରହସ୍ୟ ଅଛି । ମୁଁ ନିଜକୁ ଜାଲନନ୍ଦଠାରୁ ବଡ଼ ଯାଦୁକର ବୋଲି ଭାବେ, କିନ୍ତୁ ମୁଁ କହିବା ବେଳକୁ ଜାଲନନ୍ଦରହିଁ ନାମ କହିଥିଲି ।

ରାଜା ପଚାରିଲେ, "ତୁମେ ନିଜକୁ ବଡ଼ ବୋଲି ଯଦି ଭାବୁଛ ତେବେ ତା'ର ନାମ କହିଲ କାହିଁକି ?"

ଯାଦୁକରଟି କହିଲା, "ସେ ତା'ର ଶକ୍ତିଶାଳୀ ଇନ୍ଦ୍ରଜାଲର ପ୍ରଭାବରେ ଆମମାନଙ୍କୁ ବୋକା ବନାଇଛି । କିନ୍ତୁ ଏପରି ଭାବରେ ଇନ୍ଦ୍ରଜାଲ୍ ପ୍ରୟୋଗ କରିବା ନିଷିଦ୍ଧ ଅଟେ ।"

ଜାଲନନ୍ଦ କହିଲେ, "ମହାରାଜ, ସେ ଯାହା କହୁଛନ୍ତି ସତ୍ୟ । ମୁଁ ଅନ୍ୟାୟ କରିଛି । ତଥାପି ମୁଁ ଦେଖାଇବାକୁ ଚାହୁଁଥିଲି ସେ ହଜାର ହଜାର ଦର୍ଶକଙ୍କ ଉପରେ ପ୍ରଭାବ ପକାଉଥିବା ଯାଦୁକରମାନଙ୍କ ଉପରେ ପ୍ରଭାବ ପକାଯାଇ ପାରିବ ନା ନାହିଁ । ଏହି ସନ୍ଦେହ

ସେହି ସମୟରେ ଜାଲନନ୍ଦ ନାମକ ଜଣେ ଯାଦୁକର ଯାଦୁପ୍ରଭାବରେ ସମସ୍ତଙ୍କୁ ଶାନ୍ତ କରି ରାଜାଙ୍କୁ କହିଲେ, "ମହାରାଜ, ଯାଦୁକରର ଶ୍ରେଷ୍ଠତ୍ୱ ନିର୍ଣ୍ଣୟ କରିବା କେବଳ ଆପଣହିଁ କରିପାରିବେ । ସେଥିପାଇଁ ଗୋଟିଏ ଉପାୟ ଅଛି ?"

"କ'ଣ ସେ ଉପାୟଟି ?" ରାଜା ପଚାରିଲେ ।

ଜାଲନନ୍ଦ କହିଲେ, "ମହାରାଜ, ଇନ୍ଦ୍ରଜାଲ ବିଦ୍ୟାର ମହତ୍ତ୍ୱ ଆମେ ଯାଦୁକର-ମାନେ ବେଶି ଭଲ ଭାବରେ ବୁଝିପାରିବୁ । ତେଣୁ ସମସ୍ତ ଯାଦୁକର ନିଜ ନିଜର ପସନ୍ଦ ମୁତାବକ ସର୍ବଶ୍ରେଷ୍ଠ ଯାଦୁକରର ନାମ

ଦୂର କରିବା ପାଇଁ ମୁଁ ଏପରି କଲି । ଏଣିକି ପୁରସ୍କାର ଦେବା ଦାୟିତ୍ୱ ଆପଣଙ୍କର ।”

ରାଜା ଅଳ୍ପ ହସି କହିଲେ, “ଯାଦୁକର ବା ଇନ୍ଦ୍ରଜାଲିକଙ୍କ ଉପରେ ଇନ୍ଦ୍ରଜାଲର ପ୍ରଭାବ ପକାଇଥିବା ଐନ୍ଦ୍ରଜାଲିକ ଜାଲନନ୍ଦହିଁ ଆଜି ସଭାର ସର୍ବଶ୍ରେଷ୍ଠ ବିବେଚିତ ହେଲେ ।”

ରାଜାଙ୍କ ନିର୍ଣ୍ଣୟ ସମସ୍ତେ ମାନିନେଲେ ।

ତା’ପରେ ରାଜା ପୁରସ୍କାରଟି ଜାଲନନ୍ଦଙ୍କୁ ଦେଇ ପଚାରିଲେ, “ତୁମର ଏ ବିଦ୍ୟା ପ୍ରଦର୍ଶନ ପ୍ରକୃତରେ ଅଦ୍ଭୁତ । କିନ୍ତୁ ତମେ ଆଉ କାହାକୁ ଜାଣ କି ଯିଏ ତୁମ ଅପେକ୍ଷା ଅଧିକ ଶକ୍ତିଶାଳୀ ?”

“ଜାଣେ ମହାରାଜ । ସେ ମୋର ଧର୍ମପତ୍ନୀ, ତା’ର ସୌନ୍ଦର୍ଯ୍ୟ ଯୋଗୁ ମୁଁ ତା’ର ଦାସ ହୋଇ ରହିଛି । ତା’ରି ପାଇଁହିଁ ମୁଁ ଏହି ବିଦ୍ୟା ଶିଖିଲି ।” ଜାଲନନ୍ଦ କହିଲେ ।

ଏ ଉତ୍ତର ରାଜାଙ୍କର ପସନ୍ଦ ହେଲା ନାହିଁ । ରାଜା କହିଲେ, “ଇନ୍ଦ୍ରଜାଲ ତ ଅଳ୍ପ ସମୟ ପାଇଁ ଭ୍ରମ ସୃଷ୍ଟି କରେ । କିନ୍ତୁ ତୁମ ପତ୍ନୀର ରୂପ ତ ଭ୍ରମ ନୁହେଁ ?”

ଜାଲନନ୍ଦ କହିଲେ, “ଇନ୍ଦ୍ରଜାଲର ଶକ୍ତି କିଛି ସମୟ ପାଇଁ ପ୍ରଭାବ ପକାଏ; ସୌନ୍ଦର୍ଯ୍ୟ ପାଇଁ ଭ୍ରମ କିଛିବର୍ଷ ପାଇଁ ରହେ । ମହାରାଜ ଏ ବିଶ୍ୱରେ ଶାଶ୍ୱତ ବା କ’ଣ ? ସବୁ କିଛି ତ ଭଗବାନ୍‌ଙ୍କର ଇନ୍ଦ୍ରଜାଲ । ମୋ ପତ୍ନୀର ସୌନ୍ଦର୍ଯ୍ୟ ତ ଦଶବର୍ଷ ପାଇଁ ରହିବ ପରେ ସେ ବୁଢ଼ୀ ହୋଇଯିବ ।”

ଏକଥା ଶୁଣି ରାଜା ଆହୁରି ଲକ୍ଷେ ମୁଦ୍ରା ଜାଲନନ୍ଦଙ୍କୁ ଦେଇ କହିଲେ, “ମୁଁ ମଧ୍ୟ ମୋ ପତ୍ନୀର ସୌନ୍ଦର୍ଯ୍ୟ ଦ୍ୱାରା ପ୍ରଭାବିତ ହୋଇ ଜନତାଙ୍କ କଲ୍ୟାଣ ପାଇଁ କାର୍ଯ୍ୟ ନ କରି ଭୋଗ ବିଳାସରେ ସମୟ ବିତାଇଲି । ତୁମ କଥା ମୋର ଭ୍ରମ ଦୂର କରିଥିବାରୁ ଏ ଉପହାର ମୁଁ ତୁମକୁ ଦେଉଛି । ଜାଲନନ୍ଦ ଖୁସି, ପ୍ରଜା-ମାନେ ମଧ୍ୟ ଖୁସି ଯେ ଜାଲନନ୍ଦଙ୍କ ଯୋଗୁ ରାଜା ଏବେ ଜନକଲ୍ୟାଣକାରୀ କାର୍ଯ୍ୟରେ ମନ ଦେବେ ।





# ଧୀରାନନ୍ଦ

ପ୍ରାଚୀନ କାଳରେ ଦଣ୍ଡକାରଣ୍ୟରେ ଯୋଗାନନ୍ଦ ନାମକ ଜଣେ ସାଧୁ ବାସ କରୁଥିଲେ । ଗୋଦାବରୀ ନଦୀ କୂଳରେ ତାଙ୍କର ସୁନ୍ଦର ଆଶ୍ରମଟିଏ, ଚମତ୍କାର ବାତାବରଣ, ବହୁ ଦୂରଦୂରାନ୍ତରରୁ ଜାତିବର୍ଣ୍ଣ ନିର୍ବିଶେଷରେ ଶିକ୍ଷାର୍ଥୀମାନେ ଆସି ସେହି ଆଶ୍ରମରେ ରହି ଗୁରୁ ଯୋଗାନନ୍ଦଙ୍କ ସମୀପରେ ଶିକ୍ଷାଲାଭ କରୁଥା'ନ୍ତି । ସେଥିପାଇଁ ବର୍ଷଟିଏ ସମୟ ଧାର୍ଯ୍ୟ ହୋଇଥାଏ ଛାତ୍ରର ଯୋଗ୍ୟତା ପରୀକ୍ଷା କରିବାକୁ ।

ଗୁରୁ ବହୁବାର ଶିଷ୍ୟମାନଙ୍କୁ ଧରି ଅନେକ ଘନ ଜଙ୍ଗଲ ଭିତରୁ ଯାଇ ନାନା ପ୍ରକାର ଶିକ୍ଷା ଦେଉଥାନ୍ତି । ଦେବତା ଓ ରାକ୍ଷସମାନଙ୍କ ସହିତ ଦେଖା ହୁଏ । ରାକ୍ଷସମାନଙ୍କୁ ବଶକୁ ଆଣିବା ପାଇଁ ଗୁରୁ ଚେଷ୍ଟା କରନ୍ତି । ଛାତ୍ରମାନେ ମଧ୍ୟ ଶିଖନ୍ତି ।

ଥରେ ଧୀରସିଂହ ନାମକ ଏକ କ୍ଷତ୍ରିୟ ଯୁବକ ଯୋଗାନନ୍ଦଙ୍କର ଶିଷ୍ୟ ହେବାକୁ ଆସିଲା, ବୟସରେ ବହୁତ କମ ହେଲେ କ'ଣ ହେବ, ଭୀଷଣ ବୁଦ୍ଧିମାନ ଓ ଯୁଦ୍ଧବିଦ୍ୟାରେ ପାରଙ୍ଗମ । ଭୟ କ'ଣ ସେ ଜାଣି ନଥିଲା । ସେ ଅନ୍ୟ ଶିଷ୍ୟମାନଙ୍କ ପରି ବର୍ଷେ ପରୀକ୍ଷା ସମୟ ମଧ୍ୟରେ ଥାଏ ।

ଥରେ ଯୋଗାନନ୍ଦ ଶିଷ୍ୟମାନଙ୍କ ସହ ବୁଲି ବୁଲି ଗୋଟିଏ ସରୋବର କୂଳରେ ପହଞ୍ଚିଲେ ସେଠାରେ ସେମାନେ ଗୋଟିଏ ପର୍ଣ୍ଣଶାଳା ତିଆରି କଲେ । ତା' ଭିତରେ ବାଡ଼ି ଦେଇ ଛୋଟ ଛୋଟ କକ୍ଷ ସବୁ ତିଆରି କଲେ । ସେ ପର୍ଣ୍ଣଶାଳାର ଅନତି ଦୂରରେ ଗୋଟିଏ ବିରାଟ ବଟବୃକ୍ଷ ଥାଏ । ଯୋଗାନନ୍ଦ ତାଙ୍କ ଶିଷ୍ୟମାନଙ୍କୁ ଡାକି କହିଲେ, "ଦେଖ, ଏ ବଟବୃକ୍ଷ ବହୁତ ବର୍ଷର ପୁରୁଣା, ଏଥିରେ

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

ଅନେକ ପିଶାଚ ବାସ କରନ୍ତି । ଏପରିକି ତ୍ରେତାଯୁଗର ପିଶାଚ ମଧ୍ୟ ରହିଛନ୍ତି । ତମେମାନେ ରାତିରେ ସେ ଅଞ୍ଚଳକୁ ଆଦୌ ଯିବ ନାହିଁ । ଏହା ମୋର ଆଦେଶ ।”

ଗୁରୁ ଏକଥା କହିବା ବେଳେ ଧୀରସିଂହ ସେଠାରେ ନଥିଲା । ତେଣୁ ସେ ଗୁରୁଙ୍କ ନିର୍ଦ୍ଦେଶ ଜାଣି ନଥିଲା । ସନ୍ଧ୍ୟାବେଳେ ତା'ର କେତେଜଣ ସହପାଠୀ ତାକୁ କହିଲେ, “ଜାଣୁ ? ସେ ଗଛରେ ଏମିତି ଗୋଟିଏ ପିଶାଚ ଅଛି ଯିଏ ଅତ୍ୟନ୍ତ ଧୂର୍ତ୍ତ । ତାକୁ କେହି ବଶୀଭୂତ କରିପାରି ନାହିଁ ।”

“ସତେ ? କାହିଁକି କେହି ବଶୀଭୂତ କରି ପାରି ନାହାନ୍ତି ?” ଧୀରସିଂହ କୌତୁହଳୀ ହୋଇ ପଚାରିଲା ।

“ଶୁଣିଲୁ ପରା ସେ ଅତ୍ୟନ୍ତ ଧୂର୍ତ୍ତ ? ତାକୁ କିଏ କିପରି ବଶୀଭୂତ କରିବ ?” ଜଣେ ସହପାଠୀ କହିଲା ।

“ଆମ ଗୁରୁ ଯେ କୌଣସି ପିଶାଚକୁ ବଶୀଭୂତ କରି ପାରିବେ ବୋଲି ମୋର ଧାରଣା ।” ଧୀରସିଂହ ଦୃଢ଼ କଣ୍ଠରେ କହିଲା ।

“ତାହା ହୋଇପାରେ । କିନ୍ତୁ ସେ ପିଶାଚ ଗୁରୁଙ୍କ ଆଗକୁ ଆସିବ କାହିଁକି ?” ସହପାଠୀ ଉତ୍ତର ଦେଲା ।

ଧୀରସିଂହ ଗମ୍ଭୀର ହୋଇ ରହିଲା । କୌଣସି ଉପାୟରେ ଯଦି ସେ ସେହି



ପିଶାଚଟିକୁ ଥରେ ଗୁରୁଙ୍କ ଆଗକୁ ଆଣିପାରନ୍ତା, ତେବେ କେଡ଼େ ଭଲ ହୁଅନ୍ତା ।” ସେ ଏଇଆ ଭାବିଲା ।

ସେଦିନ ରାତିରେ ସମସ୍ତେ ଶୋଇଗଲେ । କିଛି ସମୟ ପରେ ଧୀରସିଂହର ନିଦ ଭାଙ୍ଗିଗଲା; ଆଉ ନିଦ ଆସିଲାନି । ସେ କୌତୁହଳବଶତଃ ବଟବୃକ୍ଷ ଆଡ଼େ ଗଲା । ଭୟ ତ ତା'ର ଜନ୍ମ ଜାତକରେ ନାହିଁ । ମନେ ମନେ ଭାବିଲା, “ନିଦ ତ ହେଉନାହିଁ ଟିକିଏ ପିଶାଚମାନଙ୍କ ସହିତ ଆଳାପ କରି ଆସେ, କ୍ଷତି କ'ଣ ?”

ଧୀରସିଂହ ଚାଲି ଚାଲି ଯାଇ ବଟବୃକ୍ଷ ନିକଟରେ ପହଞ୍ଚିଲା । ସେଠାରେ ବୁଲୁଛି,



ଦେଖିଲ ଗୋଟିଏ କଳା ଛାଇ ପରି ଆକୃତି ଗଛରୁ ତଳକୁ ଓହ୍ଲାଉଛି । ଧୀରସିଂହ ପଚାରିଲ, "ତମେ କିଏ ?"

"ମୋ ନାମ ଅନୁକମ୍ପନ । ରାବଣକୁ ମୁଁ ପ୍ରଥମେ ସୀତାଙ୍କ ରହୁଥିବା ସ୍ଥାନର ସନ୍ଧାନ ଦେଇଥିଲି ।" ଭୂତ କହିଲା ।

"ଓ, ତମେ ତ୍ରେତାଯୁଗରୁ ଏଇଠି ଅଛ ?" ଧୀରସିଂହ ପଚାରିଲା ।

"ମୁଁ ଏଠାରେ ବି ରହେ, ପୁଣି ପାତାଳପୁରୀରେ ଥିବା ନର୍କରେ ମଧ୍ୟ ବାସ କରେ । ଇଚ୍ଛା ହେଲେ ଏଠାକୁ ଆସେ ।" ଭୂତ କହିଲା ।

"ଆଚ୍ଛା ତୁମର ବନ୍ଧୁବାନ୍ଧବମାନେ ନର୍କରେ କିପରି ଅଛନ୍ତି ?" ଧୀରସିଂହ ପଚାରିଲା ।

"କ'ଣ କହିବି ? ସେମାନେ ନର୍କର ନିଆଁ ଭିତରେ ଝୁଲି ରହିଛନ୍ତି । ବହୁତ କଷ୍ଟ ଯାତନା ଭିତରେ ଅଛନ୍ତି ।" ଭୂତ କହିଲା ।

"ସବୁଠାରୁ ବେଶି ସାହସର ସହିତ ଏସବୁ କଷ୍ଟ ଗ୍ରହଣ କରୁଛି କିଏ ?" ଧୀରସିଂହ ପଚାରିଲା ।

"ରାବଣ । ତାର ବୀରତ୍ୱ ଓ ସାହସକୁ ପ୍ରଶଂସା କରିବାକୁ ହେବ ।" ଭୂତ କହିଲା ।

"ତାକୁ କି ଦଣ୍ଡ ମିଳିଛି କି ?" ଧୀରସିଂହ ପଚାରିଲା ।

"ଗୋଟିଏ ତେଲ ପାତ୍ରକୁ ନିଆଁରେ ଧରି ବସିଛି ତେଲ ଫୁଟୁଛି ।" ଭୂତ କହିଲା ।

"ଆଚ୍ଛା ! ବଡ଼ କଷ୍ଟ ତ ହେଉଥିବ । ଏବେ କୁହ, କିଏ ନର୍କଦଣ୍ଡ ଦେଖି ବେଶି କାତର ହୋଇ ପଡୁଛି ?" ଧୀରସିଂହ ଜାଣି ଜାଣି କଥା ଲମ୍ବା କରୁଥାଏ ଆଉ ଭାବୁଥାଏ ଭୂତଟା କି ମିଛସବୁ କହୁଛି ! କାରଣ ସେ ଭାବୁଥାଏ ଇତି ମଧ୍ୟରେ ଗୁରୁଜୀ ଆସିଗଲେ ଭୂତଟାକୁ କାବୁ କରି ଦିଅନ୍ତେ ।

"ସବୁଠୁଁ କାତର ହେଉଛି କୁମ୍ଭକର୍ଣ୍ଣ । ସେ କିଛି କଷ୍ଟ ସହି ପାରେ ନାହିଁ । ଖାଲି ଚିତ୍କାର କରେ ।" ଭୂତ କହିଲା ।

"ଏଁ, ଚିତ୍କାର କରେ ? କେମିତି ଭଲ କରେ ଟିକିଏ କରି ମୋତେ ଶୁଣାଇଲ ! ପାରିବଟି ?" ଧୀରସିଂହ କହିଲା ।

"ହଁ, ପାରିବ ନାହିଁ କାହିଁକି ? ଏବେ ଶୁଣ ।" କହି ଭୂତ ଗୋଟାଏ ରଡ଼ି କଲା । ସେ ରଡ଼ି ଶୁଣି ଧୀରସିଂହର କାନ ଘଁ ଘଁ ହୋଇଗଲା । ତଥାପି ସାହସ ରଖି କହିଲା, "ହେଃ ଏତିକି ଟିକିଏ ରଡ଼ି କୁମ୍ଭକର୍ଣ୍ଣ କରୁଛି । ଅସମ୍ଭବ ଏତେ ବଡ଼ ରାକ୍ଷସ ପୁଣି ନାଆଁ ରେ ମୁଣ୍ଡଝୁଲି କରି ରହିଛି; ସେ ଯନ୍ତ୍ରଣାରେ ଏତିକି ଟିକିଏ ରଡ଼ି ? କେବେ ନୁହେଁ ତୁମେ ଆହୁରି ଜୋର୍‌ରେ କର ।" ଧୀରସିଂହ କହିଲା ।

ଭୂତ ଆହୁରି ଜୋର୍‌ରେ ରଡ଼ି କଲା । ତା' ପୂର୍ବରୁ ଧୀରସିଂହ କାନରେ ଆଙ୍ଗୁଠି ପୂରାଇ ଥାଏ ।

"ଆହାହା, ଏତିକି ମାତ୍ର ରଡ଼ି ରାକ୍ଷସ କୁମ୍ଭକର୍ଣ୍ଣର କେବେ ହୋଇ ନପାରେ ।" ଧୀରସିଂହ କହିଲା । "ଆହୁରି ଜୋରରେ କର ।"

ଭୂତ ଏତେ ଜୋର୍‌ରେ ରଡ଼ି କଲା ଯେ ଧୀରସିଂହ କାନରେ ଆଙ୍ଗୁଠି ଦେଇଥିବା ସତ୍ତ୍ୱେ ମୂର୍ଚ୍ଛା ହୋଇଗଲା । ଠିକ୍ ଏତିକି ବେଳେ ସେଠାରେ ପହଞ୍ଚିଲେ ଗୁରୁ । ଭୂତର ପ୍ରଥମ ରଡ଼ିରେ ଗୁରୁ ଉଠି ପଡ଼ିଥିଲେ । ସେ ସେଠାରେ ପହଞ୍ଚି କିଛି ମନ୍ତ୍ର ଉଚ୍ଚାରଣ ପୂର୍ବକ ଭୂତ ଉପରେ ପାଣି ଛିଞ୍ଚିଲେ ଓ କହିଲେ, "ଆଉ କେବେ ଏପରି କରିବୁ ନାହିଁ ।" ଭୂତ ହାତ ଯୋଡ଼ି କ୍ଷମାପ୍ରାର୍ଥନା କରି ପାତାଳକୁ ସବୁଦିନ ପାଇଁ ଚାଲିଗଲା । ତା'ପରେ ଗୁରୁ ଧୀରସିଂହକୁ ଉଠାଇ ବସାଇଲେ ଓ କହିଲେ, "ମୋ କଥା ନ ମାନି ବିପଦକୁ କାହିଁ ଆସିଲୁ ? ତଥାପି ମଧ୍ୟ ତୋ ସାହସରେ ମୁଁ ବହୁତ ଖୁସି । ବହୁତ ବୁଦ୍ଧି କରି ଭୂତକୁ ରଖାଇଥିଲୁ । ମୋର ଦୃଷ୍ଟି ଗୋଚର ହୁଅନ୍ତେ ମୁଁ ତାକୁ ଚିରଦିନ ପାଇଁ ଏଠାରୁ ବିଦା କରି ଦେଇଛି । ତୋ'ର ନାମ ଆଜିଠାରୁ 'ଧୀରାନନ୍ଦ' ରହିଲା । ଆଜିଠାରୁ ତୋତେ ମୁଁ ଯୋଗଶିକ୍ଷା ଦେବି ।" ସେହି ଦିନରୁ ଧୀରସିଂହ ଧୀରାନନ୍ଦ ନାମରେ ପରିଚିତ ହେଲା ।






# କବି - ଆଲୋଚକ

କୁମାରଗିରି ରାଜାଙ୍କ ଦରବାରରେ ଥା'ନ୍ତି ରାମଶର୍ମା ନାମକ ଜଣେ କବି । ସେ ସାହିତ୍ୟର ଆଲୋଚକମାନଙ୍କ ପ୍ରତି ସର୍ବଦା ଉପେକ୍ଷା ଭାବ ରଖୁଥା'ନ୍ତି । ତାଙ୍କ ମତରେ ପାଠକ କାବ୍ୟ ପଢ଼ି ଖୁସି ହୋଇଗଲେ ଲେଖା ସାର୍ଥକ ହେଲା । କାବ୍ୟକବିତାର ଆଲୋଚନା ଓ ବ୍ୟାଖ୍ୟା ସବୁର କିଛି ମୂଲ୍ୟ ନାହିଁ ।

କିନ୍ତୁ ରାଜା, କବି ଓ ଆଲୋଚକ ଦୁହିଁଙ୍କୁ ସମାନ ରୂପରେ ଦେଖୁଥିଲେ, ସମାନ ଭାବରେ ଶ୍ରଦ୍ଧା କରୁଥିଲେ । ଏକଥା ରାମଶର୍ମାଙ୍କୁ ଭଲ ଲାଗୁ ନଥିଲା । ତେଣୁ ଦିନେ ଦରବାରରେ ସେ ତାଙ୍କର ମତ ପ୍ରକାଶ କଲେ ।

ଦିନେ ରାଜା ତାଙ୍କୁ ଡାକି କହିଲେ, " ଶର୍ମାଜୀ, ଆପଣଙ୍କୁ ଗୋଟିଏ କାମ କରିବାକୁ ହେବ । ଆପଣ ଗୋବିନ୍ଦପୁରର ଜମିଦାର ଉମାପତିଙ୍କ ସହ ଦେଖା କରି ଆପଣଙ୍କ ରଚିତ କାବ୍ୟ ତାଙ୍କୁ ଦେବେ ଓ ସେ କ'ଣ କହିଲେ ସେକଥା ସେଠାରୁ ଫେରି ମୋତେ କହିବେ ।"

ରାଜାଙ୍କ କଥା ମାନି ସେ ଉମାପତିଙ୍କୁ ଭେଟି କାବ୍ୟଟି ଦେଲେ ଓ ପଢ଼ିବା ପରେ ମତାମତ ଦେବା ପାଇଁ କହିଲେ । ଦୁଇଦିନ ପରେ ଉମାପତି କହିଲେ, " କବି ମହାଶୟ, ଆପଣଙ୍କ କାବ୍ୟଟି ଅବୋଧ; ଭାଷା ବହୁତ କଠିନ । କେହି ଯଦି ତାକୁ ବ୍ୟାଖ୍ୟା କରିଦିଏ ତ ତାହା ବୋଧଗମ୍ୟ ହୋଇ ପାରିବ ।"

ରାମଶର୍ମା ସେଠାରୁ ଫେରି ଆସି ଉମାପତିଙ୍କ ମତାମତ ରାଜାଙ୍କୁ ଶୁଣାଇଲେ । ରାଜା କହିଲେ, " ଶର୍ମାଜୀ, ଏବେ ଆପଣ ଟିକିଏ ରଙ୍ଗପୁର ଯାଇ ଚନ୍ଦ୍ରଶର୍ମା ନାମକ ପଣ୍ଡିତଙ୍କୁ ଭେଟି ଆପଣଙ୍କ କାବ୍ୟଟି ତାଙ୍କୁ ପଢ଼ାଇ ମତାମତ ନେଇ ଆସି ମୋତେ ଜଣାନ୍ତୁ ।"

ସଂଗ୍ରାମେନ୍ଦ୍ର

ରାମଶର୍ମା, ଚନ୍ଦ୍ରଶର୍ମାଙ୍କ ପାଖରେ ପହଞ୍ଚି ରାଜା କହିବା ଅନୁସାରେ ସବୁ କହିଲେ । ସେ ଆଗରୁ କାବ୍ୟଟି ପଢିଥିଲେ । ସେ କହିଲେ, "କବିବର, ଆପଣଙ୍କ କାବ୍ୟ ଏକ ମହାନ୍ ଗ୍ରନ୍ଥ ସନ୍ଦେହ ନାହିଁ । ରସ ସମାବେଶ ଅତ୍ୟନ୍ତ ଚମତ୍କାର । କାବ୍ୟଟି ଅପୂର୍ବ । ତେବେ ଅଳ୍ପ କିଛି ତ୍ରୁଟି ମଧ୍ୟ ଲକ୍ଷ୍ୟ କଲି, କିନ୍ତୁ ତାହା ଚନ୍ଦ୍ରରେ ଥିବା କଳଙ୍କ ପରି ସାମାନ୍ୟ ।" ତା'ପରେ ସେ କାବ୍ୟର ଗୁଣଦୋଷ ସବୁ ବୁଝାଇ ଦେଲେ, ରାମଶର୍ମା ଏବେ ରଙ୍ଗପୁରରୁ ଲେଉଟି ଆସି ରାଜାଙ୍କୁ ସବୁକଥା କହିଲେ ।

ରାଜା କହିଲେ, "ଶର୍ମାଜୀ, ଏବେ ଆପଣ ନିଜ କାବ୍ୟ ବିଷୟରେ ସଚେତନ ହୋଇଥିବେ ଆଶାକରୁଛି । ମୁଁ ଅନୁରୋଧ କରୁଛି ଆପଣ ଥରେ ଯାଇ ନଗରର ପ୍ରତିଷ୍ଠିତ ବିଦ୍ୱାନ ସୌରିଶାସ୍ତ୍ରୀଙ୍କ ସହ ଦେଖା କରି ଆସନ୍ତୁ ।"

ରାମଶର୍ମା ସୌରିଶାସ୍ତ୍ରୀଙ୍କ ସହ ଦେଖା କଲେ । ସେ କହିଲେ, "ମୁଁ ଆପଣଙ୍କ କାବ୍ୟ ପଢିଛି । କିନ୍ତୁ ତାହା ଏମିତି କିଛି ଅସାଧାରଣ ନୁହେଁ ।" ଏତିକି କହି ସେ ନାନା ଉଦାହରଣ ଦେଇ ତାଙ୍କ କଥାକୁ ପ୍ରତିପାଦିତ କଲେ ।

ରାମଶର୍ମା ଘରକୁ ଫେରି ନିଜର ଅନୁଭୂତି ସବୁ ବିଷୟରେ ଗଭୀର ଚିନ୍ତା କଲେ । ଉମାପତି ତାଙ୍କ କାବ୍ୟକୁ ବ୍ୟାଖ୍ୟା ଅଭାବରୁ ବୁଝିପାରିଲେ ନାହିଁ । ଚନ୍ଦ୍ରଶର୍ମାଙ୍କ ଆଲୋଚନା ନ ଶୁଣିଥିଲେ ସେ ନିଜର ତ୍ରୁଟି ସବୁ ବିଷୟରେ ସଚେତନ ହୁଅନ୍ତେ ନାହିଁ । ସୌରିଶାସ୍ତ୍ରୀଙ୍କ ଉପେକ୍ଷା ବଚନ ଯୋଗୁ ସେ ଅଧିକ ସୁନ୍ଦର କାବ୍ୟ ଲେଖିବାକୁ ଯତ୍ନ କରିବେ । ଏସବୁ ସେ ଭଲ ଭାବରେ ବୁଝିଗଲେ ।

କଥାବାର୍ତ୍ତାରୁ ରାଜା ଜାଣିପାରିଲେ ଯେ ଏବେ ରାମଶର୍ମା ଆଲୋଚନାର ଆବଶ୍ୟକତା ବିଷୟରେ ଯଥେଷ୍ଟ ସଚେତନ ହୋଇଛନ୍ତି । ରାଜା ଖୁସି ହେଲେ । ରାମଶର୍ମା ସେହିଦିନଠାରୁ ଆଲୋଚକ ବା ବ୍ୟାଖ୍ୟାକାରୀମାନଙ୍କୁ ହୀନ ଦୃଷ୍ଟିରେ ଦେଖନ୍ତି ନାହିଁ ।






# ଧାନୁଆ ଲଙ୍କା

କେତେ ଶତାବ୍ଦୀ ପୂର୍ବର କଥା । ରାଜପୁତାନାର ଏକ ଶ୍ରେଷ୍ଠ ସହରରେ ଏକ କ୍ଷତ୍ରିୟ ବାଳକ ଥାଏ । ତା' ନାମ ନାନୁଜୀ । ପିଲାଦିନରୁ ପିତୃହୀନ; ଦୁଇଜଣ କାକା ତାକୁ ଲାଳନ ପାଳନ କରୁଥା'ନ୍ତି । ପିଲାଦିନରୁ ସେ ନାନା ପ୍ରକାର ଅସ୍ତ୍ରଶସ୍ତ୍ର ଚଳାଇବାରେ ଓ ଘୋଡ଼ା ଚଢ଼ିବାରେ ପାରଙ୍ଗମ ହୋଇ ଉଠିଲା ।

ଗୋଟିଏ ନାଲୁଆ ଘୋଡ଼ା ଥାଏ ଯେ ସବୁ କଥାରେ ଚମକେ ଓ ନାଡ ମାରେ । ସେ କାହାକୁ ପିଠିରେ ବସାଇ ଦେଉ ନଥାଏ । ନାନୁଜୀ ସେହି ପରିତ୍ୟକ୍ତ ଦୁଷ୍ଟ ଘୋଡ଼ାକୁ ନିଜ ବୁଦ୍ଧି ବଳରେ ନାନା କୌଶଳ କରି ମଣାଇ ନେଲା । ସେଇଠାହିଁ ସବୁଦିନ ପାଇଁ ତା'ର ବାହନ ହୋଇଥାଏ । କାକାମାନେ କୁଆଡ଼େ ଘୋଡ଼ାରେ ବସି ଗଲେ ନାନୁଜୀ ତା' ନିଜ ଘୋଡ଼ାରେ ବସି କାକାମାନଙ୍କ ସହିତ ଯାଏ ।

ଦିନେ ଜଣେ ବ୍ୟବସାୟୀ କେତେଗୁଡ଼ିଏ ତରବାରି ବିକ୍ରି କରିବାକୁ ଆସିଥାଏ । ନାନୁଜୀ ସେଥିରୁ କେତେଗୁଡ଼ିଏ ଧରି ପରଖୁ ଥିବାର ଦେଖି ବେପାରୀ ହସି ହସି କହିଲା, "ଏ ବାଳକର ବୋଧହୁଏ ତରବାରି ଖେଳ ପାଇଁ ସଉକ ଅଛି ।" ଏତିକି କହି ସେ ଏକ ସୁନ୍ଦର ଓ ମଜବୁତ୍ ତରବାରି ତାକୁ ଧରାଇ ଦେଲା ।

ତରବାରିଟି ଦେଖି ନାନୁଜୀ ଖୁବ୍ ଖୁସି ହୋଇ କହିଲା, "ଏହିପରି ତରବାରିଟିଏ ମୋର ଲୋଡ଼ା । ଏଇଟି ପାଖରେ ଥିଲେ କେହି ନିକଟକୁ ଆସିବାକୁ ସାହସ କରିବ ନାହିଁ ।" ତାପରେ ସେ କାକାମାନଙ୍କ ପାଖକୁ ଯାଇ ତରବାରିଟି କିଣିବା ପାଇଁ କିଛି ଟଙ୍କା ଚାହିଲା ।

ଜଣେ କାକା କହିଲା, "ଆମେ ବଞ୍ଚି ଥାଉଁ ଥାଉଁ ପୁଣି ତୋର ତରବାରିର ଆବଶ୍ୟକତା କ'ଣ ?"

ଆଉ ଜଣେ କାକା କହିଲେ, "ଏପରି ତରବାରି ତୁ ତ ଉଠାଇ ମଧ୍ୟ ପାରିବୁ ନାହିଁ ।" ଆଉ ସେଥିରେ ଯୁଦ୍ଧ କରିବୁ କ'ଣ ?

"କାକା, ବୟସରେ ତ ପୁଣି ମୁଁ ବଢୁଛି । ମୋ ପାଖରେ ଯେଉଁ ତଲବାରଟି ଅଛି ତାହା ନିହାତି ଶ୍ରେଷ୍ଠିଆଟାଏ ।" ନାନୁଜୀ କହିଲା ।

"ପୁଅ, ଖଣ୍ଡା ଓ ତରବାରିର ଲମ୍ବ ବେଶି କମ୍ ହେଲେ କିଛି ଯାଏଆସେ ନାହିଁ । ତାହାକୁ ଧାରଣ କରିବାବାଲା ଲୋକ କିପରି ତାହାହିଁ ହେଉଛି ପ୍ରଶ୍ନ । ଖଣ୍ଡା ଶ୍ରେଷ୍ଠ ହେଲେ ଏକପାଦ ଆଗକୁ ଯାଇ ଶତ୍ରୁ ସହିତ ଲଢିବ ।" କାକାମାନେ କହିଲେ ।

କାକାମାନଙ୍କ କଥା ଶୁଣି ବାଳକ ନାନୁଜୀ ଅତ୍ୟନ୍ତ ନିରାଶ ହୋଇ ତରବାରିଟି ବ୍ୟବସାୟୀର ହାତକୁ ଫେରାଇ ଦେଲା । କିଛିଦିନ ପରେ, ଥରେ ଦଳେ ଡ଼ାକୁ ଗାଁରେ ପଶି ସବୁ ଗାଈଗୋରୁ ଅଡ଼େଇ ନେଲେ । ଗାଁ ବାଲାମାନେ ଭୟରେ ବ୍ୟସ୍ତ ହୋଇପଡି ସମସ୍ତିଙ୍କୁ ଖବରଟା ଦେଇ ଏକଜୁଟ ହେବା ପାଇଁ ଢୋଲ ବଜାଇଲେ । ଏ ଖବର ଓ ବିପଦସୂଚକ ଶବ୍ଦ ବାଳକ ନାନୁଜୀ ଶୁଣି ପାରିଲା । ଲୋକମାନଙ୍କୁ ପଚାରି ବୁଝିଲା ଘଟଣାଟା କ'ଣ । ସେ ଭାବିଲା, "ମୁଁ ଏଠାରେ ଥାଉ ଥାଉ ରାଜ୍ୟ ଭିତରେ ଏପରି ବିପଦ କାହିଁକି । ମୋ କାକା-ମାନଙ୍କ ପାଇଁ ଏହା ଅତ୍ୟନ୍ତ ଅପମାନଜନକ ମୁଁ ଯଦି ଏ କ୍ଷେତ୍ରରେ ଗ୍ରାମବାସୀଙ୍କୁ ସାହସ ଦେବାକୁ ନ ଯିବି ତେବେ ଧିକ୍ ମୋର ତରବାରିକୁ । ସେ ସେଠାରୁ ଶୀଘ୍ର ବାହାରି



ଆସି ଘୋଡ଼ା ଚଢ଼, ସୁସଜ୍ଜିତ ପୋଷାକ ପିନ୍ଧି, ଚାଲିଲା ଡାକୁଙ୍କର ପିଛୁ ଧରି ।

ଡାକୁ ସର୍ଦ୍ଦାର ବାଳକ ନାନୁଙ୍କୁ ଦେଖି ହସିଦେଇ କହିଲା, "ଆରେ ଟୋକା, ଏବେ ତୋର ନିଶ ଉଠିନାହିଁ, ତୁ ଆସିଛୁ ଆମ ହାତରୁ ଗାଈ ଛଡ଼ାଇ ନେବାକୁ ?"

ଆଉ କିଛି କହିବା ପୂର୍ବରୁ ନାନୁଙ୍କା ସରଦାର ପାଖକୁ ସିଧା ଘୋଡ଼ା ଛୁଟାଇ ଦେଇ ତରବାରିରେ ଗୋଟିଏ ଦେଲା ତା' ମୁଣ୍ଡରେ । ହେଲେ ସରଦାର ମୁଣ୍ଡକୁ କୌଶଳରେ ମୋଡିଦେଲା ଗୋଟାଏ ପାଖକୁ, ମୁଣ୍ଡର କିଛି ହେଲାନାହିଁ ସିନା ନାକଟା କଟିଗଲା । ସେ ଚିତ୍କାର କରି ତା' ଲୋକଙ୍କୁ କହିଲା, "ଦେଖୁଛ କ'ଣ ? ଧରିଆଣ ସେ ପାଜି ଟୋକାକୁ । ମୁଁ ତାକୁ ଠିକ କଟି କରି କାଟିଦେବି ।"

ଏ ଗୋଳମାଳ ମଧ୍ୟରେ ଗାଈମାନେ ଡାକୁ-ମାନଙ୍କ ଅକ୍ତିଆରରୁ ଖସି ଯାଇ ରଡ ଚିତ୍କାର କରି କରି ଗ୍ରାମ ଆଡ଼କୁ ଦୌଡ଼ିଲେ । ନାନୁଙ୍କା ମଧ୍ୟ ଗାଈଙ୍କ ଦଳ ମଧ୍ୟରେ ଆଖି ପିଛୁଳାକେ ଅଦୃଶ୍ୟ ହୋଇଗଲା । ଡାକୁମାନେ ତାକୁ ଧରିବାକୁ ବହୁ ଚେଷ୍ଟା କରି ବିଫଳ ହେଲେ ।

ଏଣେ ଗ୍ରାମବାସୀମାନେ ଗାଈମାନଙ୍କୁ ଦେଖି ଖୁସି । କିନ୍ତୁ ସେମାନେ ଭାବିପାରିଲେ ନାହିଁ ଯେ ନାନୁଙ୍କା ପରି ଏତେ ଛୋଟିକେ ପିଲା ଦ୍ୱାରା ଏ କାମ କିପରି ସମ୍ଭବ ହେଲା ।

ନାନୁଙ୍କା ଘରକୁ ଫେରିବା ପରେ କାକାମାନେ କହିଲେ, "ପୁଅ, ତୁ ଏଇ ବୟସରୁ ଜୀବନକୁ ପାଣି ଛଡ଼େଇ ଏତେ ଦୁଃସାହାସିକ କାମ କରୁଛୁ । ବଡ଼ ହେଲେ ତୁ ଆଉ କ'ଣ ନ କରି ପାରିବୁ । ତୁ ଗୋଟାଏ ବଡ଼ ବୀର ହେବୁ ।"

ନାନୁଙ୍କା ଚଟାପଟ ଜବାବ ଦେଲା, "କାକା, ମୁଁ ବାଳକ ହେଲେ କ'ଣ ହେବ । ମୁଁ ହେଉଛି ଧାନୁଆ ଲଙ୍କା । ଏତେ ଛୋଟିଏ ଲଙ୍କା ଆଉ ଏତେ ରାଗ । ମୋ ପାଖରେ ମୋ ଘୋଡ଼ା ଓ ହାତରେ ତରବାରି ଥିଲେ କୌଣସି କାର୍ଯ୍ୟ ମୋ ପାଇଁ କଠିନ ନୁହେଁ ।"





## ସ୍ତନ୍ୟପାୟୀ ପକ୍ଷୀ

ପକ୍ଷୀମାନଙ୍କ ମଧ୍ୟରେ ବାଦୁଡ଼ି ଓ ସେହି ଜାତିର ଛୋଟ ଚେମେଣିଆ ଏକମାତ୍ର ସ୍ତନ୍ୟପାୟୀ ପକ୍ଷୀ ।

## ବିଶାଳ ବସା



ଅଷ୍ଟ୍ରେଲିଆର ମାଲ୍ଲୀ ନାମକ କୁକୁଡ଼ା ଜାତୀୟ ପକ୍ଷୀ ଅଣ୍ଡା ଦେବା-ବେଳେ ୧୫ ଫୁଟ ଲମ୍ବର ଗାତ ଖୋଳିଥାଏ ।

## ଡଲ୍ ଫିନ୍-ସାର୍କ

ଡମିଙ୍ଗିଲ ଜାତିର ଡଲଫିନ୍‌ମାନେ ଖୁବ୍ ସାଧୁ ପ୍ରକୃତିର । କିନ୍ତୁ ସାର୍କ ପରି ଭୟଙ୍କର ଶତ୍ରୁର ସାମ୍ନା କରିବାକୁ ସେମାନେ ଭୟ କରନ୍ତି ନାହିଁ । ବରଂ ଦଳବାନ୍ଧି ସାର୍କକୁ ତଡ଼ନ୍ତି ବା ଘୁମି ଘୁମି ତା'କୁ ଶେଷ କରି ଦିଅନ୍ତି ।



# ଫଟୋ ପରିଚୟ ପ୍ରତିଯୋଗିତା : ପୁରସ୍କାର ୫୦

ପୁରସ୍କୃତ ପରିଚୟୋକ୍ତି ଫେବୃଆରି ୧୯୮୯ ସଂଖ୍ୟାରେ ପ୍ରକାଶ ପାଇବ



M. Natarajan



M. Natarajan

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଛୋଟ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଡିସେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ଠିକଣା ପୋଷ୍ଟକାର୍ଡରେ ଲେଖି ନିମ୍ନ ଠିକଣାରେ ପଠାନ୍ତୁ :

**ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬**

---

## ଅକ୍ଟୋବର '୮୮ ପ୍ରତିଯୋଗିତାର ଫଳ

**ପ୍ରଥମ ଚିତ୍ର : ସତେ ମୁଁ ହେବିକି ତୁମରି ସରି !**

**ଦ୍ୱିତୀୟ ଚିତ୍ର : ମୁଁ ବି ଥିଲି ଦିନେ ତୋହରି ପରି ।**

**ପୁରସ୍କାର ବିଜୟୀ : ବସନ୍ତ କୁମାର ତ୍ରିପାଠୀ, ପିତଳ, ଗଞ୍ଜାମ**

ବିଜୟୀଙ୍କୁ ଅଭିନନ୍ଦନ, ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


# ଜହ୍ନମାମୁଁ

**ବାର୍ଷିକ ଦେୟ : ଟ. ୩୬-୦୦**

ମନିଅର୍ଡର ପଠାଇବା ଠିକଣା :

ଡଲ୍‌ଟନ୍ ଏଜେନ୍‌ସିଜ୍, ଚନ୍ଦାମାମା ବିଲ୍‌ଡିଂସ୍, ବଡପଲନୀ, ମାଡ୍ରାସ-୬୦୦୦୨୬

ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେଶନ୍ସ, ଚନ୍ଦାମାମା ବିଲ୍‌ଡିଂ, ବଡପଲନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.